## ଆନୁମାନିକ ବର୍ତ୍ତମାନ

| ଓଡ଼ିଆ | ସାନ୍ତାଳୀ |
|---|---|
| ମୁଁ ଯାଉଥିବି | ଇଂସେନ୍-ହାନ୍ତାଳକ ଆପୁ୍ |
| ଆମେ ଦୁହେଁ ଯାଉଥିବୁ | ଆଲିଂ ସେନ୍ ହାନ୍ତାଳ୍କ-ଆଲିଂ |
| ଆମ୍ଭେମାନେ ଯାଉଥିବୁ | ଆବ ସେନ୍ ହାନ୍ତାଳ୍କ ଆବ |
| ତୁମେ ଯାଉଥିବ | ଆମ୍ ସେନ୍ ହାନ୍ତାଳ୍କ ଆମ୍ |
| ତୁମେ ଦୁହେଁ ଯାଉଥିବ | ଅ.ବିନ୍ ସେନ୍ ହାନ୍ତାଳ୍କ ଆ.ବିନ୍ |
| ତୁମ୍ଭେମାନେ ଯାଉଥିବ | ଆପେ ସେନ୍ ହାନ୍ତାଳ୍କ ଆପେ |
| ସେ ଯାଉଥିବେ | ଉନି ସେନ୍ ହାନ୍ତାଳ୍କ ଆପୁ |
| ସେ ଦୁହେଁ ଯାଉଥିବେ | ଉନ୍କିନ୍ ସେନ୍ ହାନ୍ତାଳକ ଆକିନ୍ |
| ସେମାନେ ଯାଉଥିବେ | ଉନ୍କୁ ସେନ୍ ହାନ୍ତାଳ୍କ ଆକ |

## ସମ୍ଭାବ୍ୟ ବର୍ତ୍ତମାନ

| | |
|---|---|
| ମୁଁ ଯାଇଥାନ୍ତି | ଇଂ ସେନ୍ କଃ ଆଇଂ |
| ଆମେ ଦୁହେଁ ଯାଇଥାନ୍ତୁ | ଆଲିଂ ଲିଂ ସେନ୍ କଃ ଆ |

---

## ବନଫୁଲ ମିଳିବା ଠିକଣା

୧—ଆଦିବାସୀ ଭାଷା ଶିକ୍ଷକ, ବାରିପଦା
୨—ଆଦିବାସୀ ଭାଷା ଶିକ୍ଷକ, ଉଦଳା
୩—ବନଫୁଲ କାର୍ଯ୍ୟାଳୟ, ଭୁବନେଶ୍ୱର-୭୫୧୦୧୪



**Sri Siba Prasad Majhi** of Mayurbhanj honoured
on behalf of the Institute.



**Sri K. C. Mishra,** I.A.S., Director T.R.W. Orissa, Visiting the Institute.

# ଚାରି ଜଣରେ ଜଣେ

ଶ୍ରୀ ଉପେନ୍ଦ୍ର ମିଶ୍ର

ମାଲକାନଗିରି ହିମଗିରି ଚାଲ ଚାଲ ବାଲିଗୁଡ଼ା ବାଟେ,
ଚାଲ ସଇଁତଳା ଭୂୟାଁପୀଢ଼ ଚାଲ ଚାଲ ଜାମଶୋଳା ଘାଟେ ।୧।
ଦେଖ ସଉରା ଦେଖ କୁଟିଆ ଦେଖ ପରଜା ଦେଖ ସାନ୍ତାଳ ଯେତେ,
ଲେଖ କବିତା ଲେଖ ଗଳ୍ପ ଲେଖ ସମ୍ବାଦ ନିଜର ଇଚ୍ଛା ମତେ ।୨।
ହେଉ ସମିତି ହେଉ ରାଜନୀତି ଆଦିବାସୀ ସେ ଜୀବନେ ନାହିଁ ଥକେ,
ଚାରି ଜଣରେ ଜଣେ ସେ ଭାଇ ନ ପାଏ ଦାନା ନ ପାଏ କନା
ନ ପାଏ ଥାନ ଟିକେ ।୩।
ଆଦିବାସୀ ସେ ଅଧିବାସୀ ସେ ମୂଲିଆ ଖଟିବା ଲୋକ ପରା,
ପାହାଡ଼ କାଟି ଜଙ୍ଗଲ ପୋଡ଼ି ମାଟିରେ ମିଶି ଖଟେ ଜୀବନ ସାରା ।୪।
ଯାଉଛନ୍ତି ସେଠି ଡାକ୍ତ୍ରୀବୁଢ଼ା ଯାଉଛନ୍ତି ନେତା ଯାଉଛନ୍ତି କର୍ମଚାରୀ,
ନିଜ ଫାଇଦା ଉଠାଇ କେତେ ଫେରେ ବୁଜୁଳି ଧରି ।୫।
ଲଙ୍ଗଳା ସେ ସରଳ ଲୋକ ପାହାଡ଼େ ରହି ନିଜର ଠେକ,
ତା ପାଇଁ ନାହିଁ ଟିକିଏ ବୋଲି ମମତା ଖାଲି ଭୋକରେ ଭୋକ ।୬।
ଆସ ହେ ବନ୍ଧୁ ଆସ ହେ ଭାଇ ଆସ ହେ କବି କୁଳ,
କଲମ ମୁନେ ଜଣାଇଦେବା ଆଦିବାସୀର ବଳ ।୭।
ହେବ ଉନ୍ନତି ଦେଶର ଆମ ବଢ଼ିବ ଆମ ବଳ,
ସଭିଏଁ ମିଶି ଗୋଟିଏ ହେବା ନ ଥିବ ଜାତି ଦଳ ।୮।
କୁଆଁ ଅରୁଆଁ ଦୂରେଇ ଯିବ ଆଦିବାସୀ ସେ ଗଣିତ ହେବ,
ଓଡ଼ିଶା ଦେଶେ ଉଇଁ ଉଠିବ ନୂତନ ସୂର୍ଯ୍ୟ ଶଶି ।୯।
ନୁହେଁ ଯେ ଖୋଲି ପାହାଡ଼ ଖୋଲେ ନୁହେଁ ସେ ଆଦିବାସୀ,
ଆମର ଦେଶ ମଣିଷ ସିଏ ନୂତନ ସୂର୍ଯ୍ୟ ଶଶି ।୧୦।

# ଆଦିବାସୀ ଓ ମକରମେଳା

ଶ୍ରୀ ନିରଞ୍ଜନ ପଣ୍ଡା

ପ୍ରାକ୍‌କାଳରେ ଅନଗ୍ରସର ଜାତିମାନଙ୍କ ମନରେ ଥିବା ଦୈନ୍ୟ-ବୋଧିକା, କ୍ରମେ ଊନବିଂଶ ଶତାବ୍ଦୀର ଶେଷଭାଗରେ ଯଥେଷ୍ଟ ସଙ୍କୁଚିତ ହୋଇଯାଇଛି ! ଏବେ କ୍ରମଶଃ ତାହା ସଂପୂର୍ଣ୍ଣ ଲୋପ ପାଇଯିବାକୁ ବସୁଥିବା ଅତ୍ୟନ୍ତ ଆନନ୍ଦର ବିଷୟ । ଅନଗ୍ରସର ଜାତିମାନଙ୍କ ମଧ୍ୟରେ, ପ୍ରାୟତଃ ଆଦିବାସୀ ପର୍ଯ୍ୟାୟଭୁକ୍ତ ମଣିଷମାନେ, ଯେଉଁମାନେ ନିତାନ୍ତ ହୀନଗଣ୍ୟ ହୋଇ ଚିରକାଳ ବାସ କରି ଆସୁଥିଲେ, ଏବେ ସେମାନେ ନୂତନ ଯୁଗରେ ଏବଂ ନୂତନ ଜୀବନର ସୂର୍ଯ୍ୟୋଦୟ ଦେଖି ପାରିଛନ୍ତି । ସେମାନଙ୍କର ଚିରକାଳ ସକାଶେ ଥିବା ଅଜ୍ଞତା କ୍ରମେ ଦୂର ହୋଇଯାଉଛି । ପ୍ରାୟ ଶତାଧିକ ଆଦିବାସୀଙ୍କ ସହ ସାକ୍ଷାତକାର ପରେ ମୋର ଏହି ଅଭିଜ୍ଞତା ଅର୍ଜନ ହୋଇଛି ।

ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ, ଅଦ୍ୟାପି ସବୁ ଆଦିବାସୀମାନେ ସଭ୍ୟତାର ଚରମ ସ୍ଥାନରେ ପହଞ୍ଚି ପାରିନାହାନ୍ତି, ମାତ୍ର ସେମାନଙ୍କ ମଧ୍ୟରୁ ଯେ ପ୍ରାୟ ୫୦ ଭାଗ ଲୋକ ସଭ୍ୟତାର ଆଲୋକ ଦେଖିଲେଣି, ଏହା କହିବା ନିଷ୍ପ୍ରୟୋଜନ ।

ଆଦିବାସୀମାନଙ୍କର ଜୀବନକୁ ଅନୁଧ୍ୟାନ କଲେ, ସେମାନଙ୍କର ହୀନଭାବ ଦେଖି ଯେତିକି ଦୁଃଖ ଲାଗେ, ଠିକ୍ ସେତିକି ସୁଖ ଲାଗେ, ସେମାନଙ୍କର ଐକ୍ୟବୋଧ ଜୀବନଯାପନ ପ୍ରଣାଳୀ ଦେଖିବା ପରେ । ସେମାନଙ୍କ ଜୀବନର ବିଭିନ୍ନ ପର୍ଯ୍ୟାୟ ମଧ୍ୟରୁ ସେମାନଙ୍କର ପର୍ବପର୍ବାଣୀ ଆଲୋଚନା କରିବା ଏହି ପ୍ରବନ୍ଧର ଆଭିମୁଖ୍ୟ ।

ଯେଉଁ ଜାତି ଯେତେ ହୀନ ହେଲେବି, ସେମାନଙ୍କ ଜୀବନବୋଧରେ ଅଛି ଏକ ପ୍ରାଣପ୍ରାଚୁର୍ଯ୍ୟ, ଦୁର୍ବିସହ ଯନ୍ତ୍ରଣା ଭିତରେ ବଞ୍ଚି ରହିବାର ଏକ

ଜୀବନ ଅଭିଳାଷ । ଜୀବନକୁ ମହୋଲ୍ଲାସ କରିବା ପାଇଁ ବିଭିନ୍ନ ପର୍ବପର୍ବାଣୀର ଆବଶ୍ୟକତା ଅବଶ୍ୟ ଅନସ୍ୱୀକାର୍ଯ୍ୟ ।

ମୁଖ୍ୟତଃ ଆଦିବାସୀମାନଙ୍କର ଯେତେ ସବୁ ପର୍ବ ରହିଛି, ତନ୍ମଧ୍ୟରୁ ରଜପର୍ବ ଓ ମକର ପର୍ବ ହେଉଛି ସର୍ବଶ୍ରେଷ୍ଠ ପର୍ବଦ୍ୱୟ । ତଥାପି ମକର ପର୍ବର ସ୍ଥାନ ଅଗ୍ରଗଣ୍ୟ । ଉକ୍ତ ପର୍ବଟିକୁ କେତେକ ସ୍ଥାନରେ ପ୍ରାୟ ୩ରୁ ୭ ଦିନ ପର୍ଯ୍ୟନ୍ତ ପାଳନ କରାଯାଇଥାଏ ।

ସାଧାରଣତଃ ଏହି ପର୍ବ ସର୍ବନିମ୍ନ ତିନିଦିନ ବ୍ୟାପି ପାଳନ କରାଯାଏ ମକର ସଂକ୍ରାନ୍ତିଠାରୁ ଆରମ୍ଭ କରି ତିଆସୀ ଦିନ ପର୍ଯ୍ୟନ୍ତ । କର୍ମବହୁଳ ଜୀବନ ଭିତରେ ସେମାନେ ଯେତିକି ସଞ୍ଚୟ କରିଥାନ୍ତି, ସେସବୁକୁ ଏହି ତିନି ଦିନ ଭିତରେ ପ୍ରଚୁର ମଦ୍ୟପାନ କରିବାରେ ଶେଷ କରିଦିଅନ୍ତି । ସେମାନଙ୍କର ଏହି ମଦ୍ୟ ତିଆରି କରିବାର ପ୍ରଣାଳୀ ଭିନ୍ନ ପ୍ରକାରର । ଯାହାକୁ ଓଡ଼ିଆରେ କହିଲେ 'ହାଣ୍ଡିଆ' ବୋଲି ବୁଝାଯାଇଥାଏ ।

ସାଧାରଣ ଭାବରେ ଆଦିବାସୀ କହିଲେ ଆମେ ଯେମିତି ଗୋଟିଏ ଭାଷାଭାଷୀ ବା ଗୋଟିଏ ଜାତି ବୋଲି ବୁଝିଥାଉ, ବାସ୍ତବ କ୍ଷେତ୍ରରେ ତାହା ସତ୍ୟ ନୁହେଁ । ସେମାନଙ୍କ ଭିତରେ ଅନେକ ଜାତି ବିଭାଜନ ଓ ଉଚ୍ଚ ନୀଚର ବ୍ୟବସ୍ଥା ରହିଛି । ପୁଣି ପ୍ରତ୍ୟେକ ଜାତି ପାଇଁ ସ୍ୱତନ୍ତ୍ର ଭାଷା ରହିଛି । ସୁତରାଂ ପର୍ବପର୍ବାଣୀକୁ ମଧ୍ୟ ସେମାନେ ବିଭିନ୍ନ ଭାବରେ ପାଳନ କରନ୍ତି । ପରୀକ୍ଷାମୂଳକ ଭାବେ ଏହାକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ—

ଓଡ଼ିଆରେ ଯଦି ଆମେ କହୁ—ମୁଁ ପଖାଳ ଖାଉଛି ।

ସେତେବେଳେ ଭୂମିଜ ଏବଂ କୋହ୍ଲ ଶ୍ରେଣୀୟ ଲୋକେ କହନ୍ତି—ମାଣ୍ଡିଯାମ ତାନା ।

ସାନ୍ତାଳ ଏବଂ ବୀର ଶ୍ରେଣୀୟ ଲୋକେ କହନ୍ତି—ବାସାକେ ଦାକାଏଁ ଯୁଯୁମ୍ କାଁନେଁ ।

ବହାଣୀ ଶ୍ରେଣୀୟ ଲୋକେ କହନ୍ତି—ଭାତ୍‌ଠୁ କୁମ୍ ଖାଁବେଁ ।

କଦା ଶ୍ରେଣୀୟ ଲୋକେ କହନ୍ତି—ଯୁମ୍ କେ ଦାମ୍ ।

ବାଥୁଡ଼ି ଶ୍ରେଣୀୟ ଲୋକେ କହନ୍ତି—ମୁଁ ପାଁଖାଡ୍ ଖାଉଁଚାଁରେ ।

ଅତଏବ ଉପରୋକ୍ତ ଭାଷାରୁ ସେମାନଙ୍କର ଭାଷାଗତ ବୈଷମ୍ୟ ବେଶ ସୁସ୍ପଷ୍ଟ । ମାତ୍ର ସମସ୍ତେ ସମସ୍ତଙ୍କର କଥା ବୁଝିପାରନ୍ତି । କିନ୍ତୁ ପର୍ବପର୍ବାଣୀରେ ଗାନ ହେଉଥିବା ସଙ୍ଗୀତ ସମସ୍ତଙ୍କର ଭିନ୍ନ ଭିନ୍ନ । ସମସ୍ତଙ୍କର ପର୍ବ

ପରମ୍ପରା ମଧ୍ୟ ଭିନ୍ନ । ଏପରି କି ସେମାନଙ୍କର ବ୍ୟବହୃତ ବାଦ୍ୟଯନ୍ତ୍ର (ମାଦଳ) ମଧ୍ୟ ଭିନ୍ନ ପ୍ରକାରର । —

କିନ୍ତୁ ମୋଟାମୋଟି ଭାବରେ ସମସ୍ତଙ୍କର ଆଭିମୁଖ୍ୟ ଏକ । ସମସ୍ତଙ୍କର ସଭ୍ୟତା ଓ ବ୍ୟବହାର ଏକ ।

ଉକ୍ତ ପ୍ରବନ୍ଧରେ ସାନ୍ତାଳ ଶ୍ରେଣୀୟ ଆଦିବାସୀମାନଙ୍କର ମକର ପର୍ବରେ କଟୁଥିବା ଜୀବନ କଥା ଏଠାରେ ଉଲ୍ଲେଖନୀୟ ।

ମକର ପର୍ବର ପ୍ରଥମ ଦିନରେ ଆରମ୍ଭ ହୁଏ ନୃତ୍ୟ । ଅନ୍ତତଃ ପୂର୍ବ ତିନ ଦିନରୁ ଚାଉଳକୁ ଭିଜା କରି ସେଥିରୁ ସେମାନେ ଏକପ୍ରକାର ପାନୀୟ ତିଆରି କରନ୍ତି । ତତ୍ପରେ ସେହି ପ୍ରସ୍ତୁତ ପାନୀୟକୁ ସେମାନେ ସମବେତ ଭାବରେ ପାନ କରନ୍ତି । ତାପରେ ଆରମ୍ଭ ହୁଏ ନୃତ୍ୟ । ସେହି ନୃତ୍ୟର ତାଳେ ତାଳେ ସେମାନେ ଭାସିଯା'ନ୍ତି କେଉଁ ଏକ ସପନ ରାଇଜକୁ ; ଯେଉଁଠି ନ ଥାଏ ଚିନ୍ତା, ଶୋକ, ଯନ୍ତ୍ରଣା, ବ୍ୟାଧି, ଜରା ଏବଂ ମୃତ୍ୟୁ । ଏକ ଅଥଳ ପାରାବାରର ଶାନ୍ତିଦ୍ୱୀପରେ ରହି ସେମାନଙ୍କ ଆଖି ଆଗରେ ସୃଷ୍ଟି-ସମ୍ଭାର ହୋଇ ଉଠେ ମଧୁମୟ । ସେମାନଙ୍କ ଜୀବନରେ ସବୁଠାରୁ ବଡ଼ ଗୁଣ ହେଲା ପରମ୍ପରାଗତ ଜୀବନଯାପନ । ବାସ୍ତବ କ୍ଷେତ୍ରରେ ସେମାନେ ଯେତିକି ପୃଥକାନ୍ନକୁ ଭଲ ପା'ନ୍ତି, ସେତିକି ଭଲପା'ନ୍ତି କୌଣସି ମେଳା ବା ପର୍ବପର୍ବାଣୀରେ ଐକ୍ୟବଦ୍ଧ ଜୀବନ ପ୍ରଣାଳୀକୁ । ଅନୁଧ୍ୟାନ କଲେ ଦେଖାଯାଏ, ସେମାନେ ଯେତେ ପରମ୍ପରାଧର୍ମୀ ହେଲେ ବି ସାଂପ୍ରତିକ ଜୀବନରେ ଏବେ ତାହା କ୍ରମଶଃ ହ୍ରାସ ପାଇଯାଇଛି । ପ୍ରମାଣମୂଳକ ଭାବେ କୁହାଯାଇପାରେ ଯେ—

ଏହି ମକର ମେଳାରେ ସେମାନେ ଧରି ଆଣନ୍ତି ଜଙ୍ଗଲରୁ ଏକ ମର୍କଟ । ତାକୁ ମଝିରେ ଥିବା କୌଣସି ଖୁଣ୍ଟରେ ବାନ୍ଧିଦେଇ ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ଏକ ଏକ ଦଳ ହୋଇ ହାତ ଓ କମରକୁ ଛନ୍ଦି ଏକ ତାଳରେ ନାଚ ନାଚ ଗୀତ ଆରମ୍ଭ କରନ୍ତି ।

"କୁଣ୍ଡା ଖାଇ ଖାଇ ବୁଢ଼ା ଡାହୁକାଟିଲା
ଏଡ଼ ଗୁନ୍ଦଲି ପାଚିଲା ବୁଢ଼ା ମରିଗଲା ।"

ଏହି ସଙ୍ଗୀତ ଯେତିକି ହାସ୍ୟୋଦ୍ଦୀପକ, ସେତିକି ମଧ୍ୟ ଅର୍ଥଯୁକ୍ତ ।

ଅର୍ଥାତ୍ ଜଙ୍ଗଲରେ କୌଣସି ଏକ ବୃଦ୍ଧମର୍କଟ ସେହି ଜଙ୍ଗଲର ଶସ୍ୟଦାନା ଖାଇ ଜଙ୍ଗଲ ପରିଷ୍କାର କରି ବୁଝିଦେଲା ଏଡ଼ (ଶସ୍ୟ) ।

କ୍ରମେ ଏଡ଼ ପକ୍ୱ ହୋଇ ଆସିଲା । ପୃଥିବୀ ଶସ୍ୟଭରା ହେଲା । କିନ୍ତୁ ବୃଦ୍ଧ ମର୍କଟର ହେଲା ଅପମୃତ୍ୟୁ । ଶସ୍ୟ ବୁଣିଥିଲା ସେ । ଶସ୍ୟ ବି ଉତ୍ପାଦନ କଲା ସେ । କିନ୍ତୁ ସେହି ଶସ୍ୟକୁ ଉପଭୋଗ କରିବା ଆଗରୁ ତାର ଜୀବନପୁଷ୍ପ ଝଡ଼ିଗଲା । ଏମିତି ବି ଝଡ଼ିଯାଏ ସମସ୍ତଙ୍କର ଜୀବନ ଦିନେ ନା ଦିନେ । ବୁଣି-ଥିବା ଶସ୍ୟକୁ ଉପଭୋଗ କରିହୁଏନି ।

ନାଚି ନାଚି ସେମାନେ କ୍ଳାନ୍ତ ହୋଇପଡ଼ନ୍ତି, ସେତେବେଳେ ସେମାନେ ସମବେତ କଣ୍ଠରେ ଗାନ କରନ୍ତି—

“ବିଦାଇ ବିଦାଇ ଦେ ବିଦାଇ ଛଟ୍ ବିଦାଇ ଦେ
ହାମର ଘର୍ ଦାଇ ବଡ୍ ଧୁରିଆ ।
ଗୁନ୍ଦଲି ବୁସୁ କୁଠା କୁଠା ତେଲ୍ରି ସେ ସିଁ କଠାଇୟୁଁ ମା ମାନ୍
ନଇଁ ସିମ୍ ରିସା ସିମ୍ ମଣେଗାଣ୍ଡା ବଲି ଲେ ଡିଁ
ନଇଁତ୍ୟୁକୁମ୍ବଡ଼ୁ ତ୍ୟୁଁ ଗେଗ ଯମ୍ କେ ଦେ
ତୁପ୍ୟୁ ମେ ନାଦରୁଣ୍ଡା ଯଁ କେଦେ
ରୁଣ୍ଡାଇ ମେଁ ନାଦତ୍ୟୁଁ ଯମ୍ କେଦେ
ମିଁ ତ୍ୟୁଁ ଦେଡ଼ ଯମ୍ ମେଁ
ସସାଂ ଘୋଡ଼ା ମସାଂସେ ତା କକୟୁ କାନା ।”

ଅର୍ଥାତ୍—ମୋର ଘର ବହୁତ ଦୂର, ଶୀଘ୍ର ଚାଲିଯିବାକୁ ହେବ । ତେଣୁ ମୋତେ ଶୀଘ୍ର ବିଦାୟ ଦିଅ । ହେ ବନ, ହେ ପର୍ବତ, ହେ ନଦନଦୀ, ତରୁଲତାଗଣ, ମୋତେ ବିଦାୟ ଦିଅ । ଇଚ୍ଛା ଥିଲା ଗୁନ୍ଦଲି ( ଚଳଧାନ ) ଖାଇ ତୁମ ସହ ଦିନ ନେଇଥାନ୍ତି । କାତର କଣ୍ଠରେ ଅଭିବ୍ୟକ୍ତ ବାତୁଛି କୁକ୍କୁଟ, ବିଦାୟ ନେବାକୁ ସେ ଉଚ୍ଛନ୍ନ । କାରଣ ଏହି ଜଙ୍ଗଲରେ ସେ ୫ ଗଣ୍ଡା ଡିମ୍ବ ଦେଇଥିଲା । ମନରେ ଐନ୍ଦ୍ରଜାଲିକର ସ୍ୱପ୍ନ ତାକୁ ଅନନ୍ତ ମାୟାପୁରୀକୁ ନେଇଯାଉଥିଲା । ହୃଦୟ ତାର ପୁରିଉଠୁଥିଲା ନିଜ ପ୍ରସୂତ ଡିମ୍ବ ଦେଖିବା ପରେ । କିନ୍ତୁ ତା’ ଜୀବନରେ ଆସିଲା ଅକାଳ ଦୁଃଖ । ଚୋର ସିଆଡ଼ିଆ ସିଆଡ଼ି କାଟିବାକୁ ଆସି ସେ ସବୁକୁ ଚୋରାଇ ନେଲା । ସିଆଡ଼ିଆ କିନ୍ତୁ ଭଦ୍ର, ସେ ମଣିଷ, ତାର ଅନ୍ତର ଅଛି । ପରର ଦୁଃଖ ସେ ବୁଝେ । କୁକ୍କୁଟର କ୍ଷୋଭଭରା ଉକ୍ତି ଶୁଣି ସେ ବ୍ୟକ୍ତ କଲା ନିଜ ଅନ୍ତରର ଦୁଃଖ । ସିଆଡ଼ିଆ ସାନ୍ତ୍ୱନାଭରା କଣ୍ଠରେ କହିଲା—ତା’ ଡିମ୍ବଗୁଡ଼ିକୁ କଠାସ ଖାଇଛି, କଠାସ ପୁଣି କହିଲା—ନାଁ, ନାଁ, ସେ ଖାଇନାହିଁ ; ଖାଇଛି

ଶୃଗାଳଟିଏ । ପ୍ରକୃତରେ ଟଗର ହେଉଛି ଶୃଗାଳ । ତାକୁ ଭୟ ଦେଖାଇ ଘଉଡ଼ାଇ ଦେବାକୁ ହେବ । ତେଣୁ ଉଚ୍ଚ ସ୍ୱରରେ ଡାକ କହିଲ—ହେ ଶୃଗାଳ, ଶୀଘ୍ର ପଳାୟନ କର । ନଚେତ୍ ମୃତ୍ୟୁ ତୁମର ଅନିବାର୍ଯ୍ୟ । ହଳଧା ବାଡ଼ର ଶ୍ୱାନ ତୋର ଅପେକ୍ଷାରେ ।

ଏହି ସଂଗୀତ ସବୁ ଶୁଣିଲେ ଯେତିକ କଠୋର ମନେହୁଏ କମ୍ବା ଅର୍ଥ ନଥିବା ପରି ମନେହୁଏ, ଅପରପକ୍ଷେ ଅର୍ଥଗୁଡ଼ିକର ଅବଗତ ହେଲେ ସେତିକ ଗମ୍ଭୀର ଏବଂ ହାସ୍ୟୋଦ୍ଦୀପକ ହୋଇଥାଏ ।

ଗୋଟିଏ ତାନମାନ ଲୟରେ ସଂଗୀତର ପୁନରାବୃତ୍ତି ଘଟେ । ଏମିତି କେତେ ନୂତନ ନୂତନ ସଙ୍ଗୀତ ଗାନ ହୁଏ । କିନ୍ତୁ ବିଭିନ୍ନ ସମୟ ପାଇଁ ସଂଗୀତ ସବୁ ଭିନ୍ନ ଭିନ୍ନ । ଏ ଗଲ ମାଙ୍କଡ଼ ନାଚ ଗୀତ । ମାଙ୍କଡ଼କୁ ମଝିରେ ରଖି ଚଉପାଶ ଘେରି ସେମାନେ ଏହି ସଂଗୀତ ଗାନ କରନ୍ତି । ଏବେ କିନ୍ତୁ ଅନେକ ସ୍ଥାନରେ ମର୍କଟ ଅଭାବରୁ ସେମାନେ କଣ୍ଢେଇ-ମାଙ୍କଡ଼ଟିଏ ମଝିରେ ରଖିଦେଇ ପରଂପରାର ଉତ୍ତର-ବାହକଭାବରେ ସମସ୍ୱରରେ ଗାନ କରନ୍ତି ।

ସବୁଠାରୁ ବଡ଼ କଥା ହେଲା—ସେହି ସଂକ୍ରାନ୍ତି ଦିନ ସେମାନେ ଯେଉଁଠାରେ ନୃତ୍ୟ କରନ୍ତି ସେଠାରେ ଖାର ବନ୍ଧା ହେବା ପାଇଁ ଗୋଟିଏ ଲୁଗା ବାନ୍ଧି ମଝିରେ କଳା ଚିହ୍ନଟିଏ ରଖାଯାଏ । ପ୍ରତିଯୋଗୀମାନେ ତା' ଭିତରକୁ ଲକ୍ଷ୍ୟକରି ଶର ନିକ୍ଷେପ କରନ୍ତି । ଯିଏ ସେହି ସ୍ଥାନକୁ ଠିକ୍ ଭାବରେ ଶର ନିକ୍ଷେପ କରି ନିଜର ସିଦ୍ଧହସ୍ତର ପରିଚୟ ଦିଏ, ସେ ପୁରସ୍କୃତ ହୁଏ । ଏଥିରୁ ସେମାନଙ୍କ ଶୀକାରୀ ଜୀବନର ପରିଚୟ ସୁସ୍ପଷ୍ଟ ହୋଇଥାଏ ।

ଯାତ୍ରା ସଂଗୀତ ସେମାନଙ୍କର ଭିନ୍ନ । ବିବାହର ସଂଗୀତ ଭିନ୍ନ । ମୃତ୍ୟୁଜନୀତ ଶୋକରେ ସଂଗୀତ ଭିନ୍ନ । ରାତି ଅନ୍ଧକାର ଭିତରେ ଐକ୍ୟବଦ୍ଧ ଭାବରେ ଗାନ ହେଉଥିବା ସଂଗୀତ ମଧ୍ୟ ଭିନ୍ନ ।

ମାତ୍ର ସେ ସବୁ ଭିତରୁ ଯାତ୍ରା ସଙ୍ଗୀତ ଖୁବ୍ ମଧୁର, କିନ୍ତୁ ସ୍ୱର, ତାନ, ମାନ, ଲୟ, ଏସବୁ ଏକ ପ୍ରକାରର ନୃତ୍ୟ ଓ ବାଦ୍ୟ ମଧ୍ୟ ଏକ । ତେଣୁ ସାଧାରଣରେ ଏହା ଖୁବ ବିରକ୍ତିକର । କିନ୍ତୁ ସେମାନେ ଏଥିରେ ଖୁବ ଖୁସି ହୁଅନ୍ତି । ଅବଶ୍ୟ ସେଗୁଡ଼ିକର ଅର୍ଥ ବୁଝିଲେ ଯେ କେହି ବି ଖୁସି ହେବ ।

"ହାହ ସେରେ ଡାଂଗୁଆ ଗାୟୁାର୍ ଛଣ୍ଡା
ସାସ୍ ହାନ୍ ଘୁରେ ଏକ୍କେ ହାଇଲ ହାହର ବହା
ଗାୟେୂର ଛଣ୍ଡା ହାଲେରେ ଡାଲେ।"

ଅର୍ଥାତ୍ ଗାଁରେ ଥିଲା ଝିଅଟିଏ, ସିଏ ସେ 'ହେଲା ଯୁବତୀ । ଗାଁ ଟୋକାଏ ତା' ସହ ଆଳାପ ହେଲେ ଖୁସି ହୁଅନ୍ତି । ସେ ସିଏ (ଯୁବତୀ) ସିଏ ବିବାହ କଲା ଅନ୍ୟ ଏକ ପୁରୁଷକୁ । ଏବେ ସେ ଶାନ୍ତ । ଆଉ କାହାସହ ସେ ଖୁସିରେ ଆଳାପ ହେଉନାହିଁ । ତେଣୁ ଗାଁ ଟୋକାଏ ମନ-ମାରି ବସିଲେ ।

ସେମାନଙ୍କର ସଂଗୀତ ଯାହା ହେଉ ନା କାହିଁକି, ସେ ସଂଗୀତରେ ଏକ ସୁମଧୁର ଅର୍ଥ ଅଛି । ସେହି ଗୀତଗୁଡ଼ିକରୁ ମଧ୍ୟ ସେମାନଙ୍କର ଅର୍ଥନୈତିକ ଜୀବନ ଓ ସାମାଜିକ ଜୀବନର ମୂଲ୍ୟ ବୃଦ୍ଧି ହୁଏ ।

"ରିନକେୟା ଟାକା ରତନ ଚୂରିକେୟା ସାନ୍ଦଁ ରେଁ ରତନ
ରିନ୍ କେୟା ଟାକା ରତନ ସୁଦେର ସୁଦ ବଡ଼ଗ୍ ଚୁରି କେବ
ସାନ୍ଦଁରେଁ କବସେ ରାଖ ॥..."

ଭାବାର୍ଥ ହେଲା—(ସେମାନଙ୍କ ମଧ୍ୟରେ ଯୌତୁକ ପ୍ରଥା ରହିଛି । ସେମାନେ ତାକୁ 'ଘଣ' ବୋଲି ଅଭିବ୍ୟକ୍ତ କରନ୍ତି । ବରବାଲା ଦିଅନ୍ତି କନ୍ୟା ଘରକୁ । ଅତଏବ କନ୍ୟାପିତା ବରର ସଂପତ୍ତି ପାଇ ଖୁସି ହୁଏ । ଏଠାରେ ସେହି ଜୀବନର ଏକଚିତ୍ର ଦିଆଯାଇଛି) ବର କହୁଛି କନ୍ୟାକୁ —, ସେ ଋଣ ଆଣିଥିଲା ମହାଜନ ଘରୁ । ସେ ଟଙ୍କା ପୁଣି ନେଲା ଶ୍ୱଶୁର ଅର୍ଥାତ୍ କନ୍ୟାପିତା । ଏଣେ ସେ ଋଣଭାରରେ ହେଲା ଭାରାକ୍ରାନ୍ତ । କାହିଁକି ? କେବଳ ସେ ବିବାହ କଲାବୋଲି ବା ବୋହୂଟିଏ ଚୋରିକଲା ବୋଲି । ମହାଜନ ଟଙ୍କାର ସୁଧ ଏବେ ବଢ଼ିବାକୁ ଲାଗିଲା । ପୁଣି ସୁଧର ସୁଧ ବଢ଼ିଲା । ସେ ସବୁକୁ ତାକୁ ଶୁଝିବାକୁ ହେବ । ନୟ୍ୟାନ୍ତ ହୋଇ, ଦିବାରାତ୍ର ପରିଶ୍ରମ କରି, ମୁଣ୍ଡଝାଳ ଭୂଇଁରେ ମାରି । ସେ ତେଣୁ ଖାପଣ କ୍ରୋଧାନ୍ୱିତହୋଇ ଅତ୍ୟାଚାର କଲା ସ୍ତ୍ରୀ ଉପରେ । ସ୍ତ୍ରୀକୁ ଜବଦ କରିବାକୁ ହେବ । କାରଣ ଏହି ସ୍ତ୍ରୀ ହିଁ ତା ସୁଧ ଟଙ୍କା ବଢ଼ିବାର ମୂଳ କାରଣ ।

କନ୍ତୁ ବବାହ ପୂର୍ବରୁ ବର ଖୁବ୍ ଖୁସି ଥିଲା । ସେ କନ୍ୟାରତ୍ନଟିଏ ପାଇବ । ମନର କୌତୁହଳ ସେ ବୁଝିପାରୁଥିଲା । ଯେମିତି ସେ ଗଡ଼ଟିଏ ଜିତି ଆସିଛି । କନ୍ୟା ପାଇ ଜୀବନ ତାର ମଧୁମୟ ହୋଇଛି ।

"ଇନ୍ଦ୍ର ସେ ରୁଣ୍ଡୁନା କନ୍ଦ ସେ ରୁଣ୍ଡୁନା ଯେଁ ଲ୍
ହାତେ ନେଇ ଜତ୍ତେ ରୁଣ୍ଡୁ–ଘରେ ନେଇଁ କନ୍ଥୁଁ
ହାମାକେଲବରୁଣ୍ଡୁ କୁଥା ରଖିବ ।"

ଅର୍ଥାତ୍ ବର ଆସିଲା । ଅତି ଆଦରରେ କନ୍ୟାର ନାମ ରଖିଲା 'ରୁଣ୍ଡୁ' । ରୁଣ୍ଡୁ ପ୍ରଶ୍ନ କଲା ତା' ବରକୁ—ମୁଁ ତ ଘର ଦେଖିନାହିଁ, କେଉଁ-ଠାରେ ମୋତେ ନେଇ ରଖିବ ? ବର ଉତ୍ତର ଦେଲା—ନଥାଉ ଘର, ଜମିବାଡ଼ି, ଧନରତ୍ନ, ଆସ୍ବ, ଅଳଙ୍କାର, କେବଳ ସେ ହିଁ ତାର । ତାକୁ ନେଇ ସେ ସ୍ୱର୍ଗସୁଖ ପାଇବ । ପୁଣି ତାକୁ ସେ ନେଇଯିବ ନିଜ ରାଜ୍ୟକୁ ।

ଏହି ସବୁ ସଂଗୀତରୁ ସେମାନଙ୍କ ଜୀବନକୁ ଅନୁଧ୍ୟାନ କରିହୁଏ । ଯାତ୍ରା ସମୟରେ ରାସ୍ତାରେ ଗାନ ହେଉଥିବା ସଂଗୀତ ମଧ୍ୟ ମଧୁମୟ । କନ୍ୟାପକ୍ଷ ଗୀତ ଆରମ୍ଭ କରନ୍ତି—

"ରାତିଏ ରାତି ବହାଦାଜା ହଲଗ
ସକାଳେର ଯୁଠି ଦେଖି ଦୁଟା ଦାନ୍ତ ଭାଙ୍ଗେ ।
ବୁଢ଼ା ଘର ବିହାଦାଦା ହାମିରୁଇବ ନାଇଁ ।
ଗୁରୁ ଦାଦା ଘୁରାଇଁ ଜେଁ ଟାକା ଦାଦା ଫେରାଏ ଦେଁ
ବୁଢ଼ା ଘର ବହାଦାଦା, ହାମିରୁଇବ ନାଇଁ...।"

ଏହାର ଭାବାର୍ଥ ବଡ଼ ହାସ୍ୟୋଦ୍ଦୀପକ ! ବର ଗଲା କନ୍ୟା ଘରକୁ । ଦିନରେ ନଯାଇ ଗଲା ମୁହଁ ସଞ୍ଜରେ । ଘର ଭିତରଟା ଆହୁରି ଅନ୍ଧକାର । ସେଇ ଅନ୍ଧକାର ମଧ୍ୟରେ କନ୍ୟା ଦେଖିଲା ବରକୁ । କିଛି ଦେଖାଗଲାନି । ତଥାପି ବରଟା ଭେଣ୍ଡିଆ ବୋଲି ତାର ମନେ ହେଲା । ସେହି ଅନ୍ଧାରରେ ବାହାଘର ଠିକ୍ ହେଲା, କନ୍ୟାପିତା ଆଗରୁ ବରପାଖରୁ କନ୍ୟା ବାବଦ ଟଂକା ନେଇସାରିଥିଲା ।...ସକାଳେ ବର ପାଖରୁ କନ୍ୟା ଉଠି ଦେଖେ ବରର ରୂପକୁ । ମନଟାରେ ଟିକେ ସନ୍ଦେହ ହେଲା । ବରର ବୟସ ହୋଇ-ଗଲାଣି ବୋଲି ତାର ମନେ ହେଲା । ସେଠୁ ଚୁପେ ଚୁପେ ନିରୀକ୍ଷଣ କଲା ସେ । ବର ଦାନ୍ତ ଘସିଲାବେଳେ ତା'ର ଆଗ ଦୁଇଟା ଦାନ୍ତ ନାହିଁ

ବୋଲି କନ୍ୟା ଜାଣିଗଲା । ତାପରେ କନ୍ୟା ପୁଣି, ଏ କଥା କହିଲା ତାର ପିତାକୁ । ସେ ଏ ବୁଢ଼ାକୁ ନେଇ ସଂସାର ବାନ୍ଧିପାରିବନାହିଁ । ତେଣୁ ବାପ ଆଗେ ସେ ଅଳିକରି ବସିଲା—ହେ ପିତା ! ତୁମେ ଫେରାଇ ଦିଅ ବରର ଗୋରୁ, ବରର ଟଂକା । ମୁଁ ଏ ବୁଢ଼ା ବର ସଂଗେ ସଂସାର କରିବ ନାହିଁ ।

ବାସ୍ତବିକ୍ ! ଏହି ଗୀତଗୁଡ଼ିକର ଅର୍ଥ ଯେତେ ମଧୁର ହେଉ ନା କାହିଁକି, ସେମାନଙ୍କର ଭାଷା ସ୍ୱୀକୃତପ୍ରାପ୍ତ ହୋଇନଥିବାରୁ, ଏ ଯାଏଁ ବି ସେ ସବୁର ଉଦ୍ଧାର କରାଯାଇନଥିବା ନିତାନ୍ତ ପରିତାପର ବିଷୟ । ଅବଶ୍ୟ କେତେକ ମନୀଷୀ ଏ ଦିଗରେ ଚେଷ୍ଟା ଚଳାଇଥିବା ଆନନ୍ଦର ବିଷୟ ।

ସେମାନଙ୍କ ଜୀବନରେ ରାମାୟଣ ଓ ମହାଭାରତର ପ୍ରଭାବ ପଡ଼ିଛି ବୋଲି ନିଃସନ୍ଦେହରେ କୁହାଯାଇପାରେ ।

"ଶିତ ଲଖନ ନଲ୍ ମେଁ ଶଠି ଭଜାଏ ମେଁ
ଶଠି ଭଜାଏଁ ମେରେ ଲଖନ୍ ଶତାଯେଁ ଯୀ ମେଁ ମେଁ
ଯୀ ମେଁ ଆବନ ରାବନ୍ ଲଖନ୍
ତନେଯୀବନ୍ ରାବନ୍
ଗଜେଯୀ ବନ୍ ରାବନ୍ ନ ଲଖନ୍
ଯୀ ଲଙ୍କା ଦଶନ୍ ରେଁ ...... ।

ଲକ୍ଷ୍ମଣର ତିନିଗୋଟି ଗାର କାଟିଥିବା ସମୟର ଚିତ୍ର ଏହି ସଂଗୀତରେ ସୁସ୍ପଷ୍ଟ । ପୁଣି ରାବଣ ଆସି ଛଦ୍ମ ବେଶରେ ସୀତାକୁ ଲଙ୍କା-ପୁରକୁ ନେଇଯାଇଛି । ହନୁମାନ ପୁଣି ସୀତାର ଠାବ କରିଛି । ରାମ ରାବଣର ଯୁଦ୍ଧ ପ୍ରଭୃତି ସେମାନଙ୍କର ଗୀତରେ ଶୋଭାପାଉଛି । କିନ୍ତୁ ସେମା-ନଙ୍କର କୌଣସି ଲିଖିତ ଭାଷା ନାହିଁ । ଏବେ ଅବଶ୍ୟ ସେ ସବୁର ପ୍ରଚେଷ୍ଟା କରାଯାଇଛି । ମୁଖ୍ୟତଃ ସେମାନଙ୍କର ଏହି ସଂଗୀତ ପରଂପରାକ୍ରମେ ମୁଖରୁ ମୁଖକୁ ଗଡ଼ିଆସିଛି । ଯୁଗ ଯୁଗ ଧରି ଏହି ଗୀତ କେବଳ ମୁଖରେ ହିଁ ବଞ୍ଚି-ରହିଛି ।

ଏମିତି ସୁଖରେ କଟିଯାଏ ତିନୋଟି ଦିନ । ତା'ପର ଦିନ କେତେକ ମୁଖିଆ ଯାତ୍ରା କରନ୍ତି ଗଙ୍ଗା ଦାମୋଦର । ମୟୂରଭଞ୍ଜ ଜିଲ୍ଲାର ବାରିପଦା ନିକଟରେ ଏହି ନଦୀର ଅବସ୍ଥାନ । ସେମାନେ ଏଠାରେ ପିତୃପୁରୁଷଙ୍କ

ସକାଶେ ଦାନ ହୁଅନ୍ତି । ଯେଉଁ ସମୟରେ ଜଣେ ଲୋକ ମୃତ୍ୟୁବରଣ କରେ । ସେତେବେଳେ ତା'ର ଆତ୍ମୀୟ ସ୍ୱଜନ ସେହି ମୃତ ବ୍ୟକ୍ତିର ଅସ୍ଥି ରଖିଥାନ୍ତି ଏବଂ ସେହି ବର୍ଷ ମକରରେ ଯାଇନପାରିଲେ କୌଣସି ଏକ ଛକ ସ୍ଥାନରେ ଜାତିଭାଇମାନଙ୍କୁ ଖାଇବାକୁ ଦେଇ ଜାତି ହୁଅନ୍ତି ଏବଂ ପୁଣି ପରବର୍ତ୍ତି ମକରକୁ ସେହି ଅସ୍ଥି ଦାମୋଦର ନେବେ ବୋଲି ଆଦେଶ ପାଆନ୍ତି । ସେମାନେ ଦାମୋଦର ଯିବା ସମୟରେ ମୃତ୍ୟୁଜନିତ ଶୋକଗୀତ ଗାନ କରନ୍ତି—

"ଆଁଡ଼ା ଦୁଆର କେଲ୍
ଗୁରୁବୁରୁରେ ଦତ୍କ ରିହ ଜଡ଼ା
କାଓିନ ମେଁ
ଗୟା ନଁଧେଁ ରେହଁ ଗଙ୍ଗା ନଦେଁ ରେହଁ
ହରିବୋଲ କାତେ ତିରିହ
ବାହା ଜବୋହା ଅମେଁ ।"

ତାପରେ ମକର ପର୍ବ ସରିଯାଏ । ପୁଣି ଆସନ୍ତା ବର୍ଷ ମକର ପାଇଁ ସେମାନେ ଅପେକ୍ଷା କରି ରହନ୍ତି । ପୂର୍ବର କର୍ମମୟ ଜୀବନକୁ ଫେରିଯାଇ ପୃଥିବୀକୁ ଶସ୍ୟଭରା କରିବା ନିମିତ୍ତ ରକ୍ତ ଦାନ ଦେବାକୁ ସେମାନଙ୍କର ପ୍ରକୃତି ସେମାନଙ୍କୁ ଦୃଢ଼ ସଂକଳ୍ପବଦ୍ଧ କରିଦିଏ ।

ଅବଶ୍ୟ କହିବାକୁ ହେବ ଯେ ସେମାନେ ଆଜି ପୂର୍ବପରି ଅଜ୍ଞାନ ଅନ୍ଧକାର ମଧ୍ୟରେ ବାସ କରୁନାହାନ୍ତି । ସଭ୍ୟତାର ଆଲୋକ ସେମାନେ ଦେଖିଲେଣି । ମଣିଷର ଦାବୀ କ'ଣ ସେମାନେ ବୁଝିଲେଣି ଏବଂ ବଞ୍ଚି ରହିବାର ଅଧିକାର ସାବ୍ୟସ୍ତ କଲେଣି ।



# ମୁଣ୍ଡାରୀ ବ୍ୟାକରଣ

ଶ୍ରୀ ସନାତନ ମୁଣ୍ଡା, ଏମ୍‌. ଏ.

ମୁଣ୍ଡାରୀ ଭାଷା ଶିକ୍ଷା କରିବାକୁ ହେଲେ ଉକ୍ତ ଭାଷାର ବ୍ୟାକରଣ ନିତାନ୍ତ ଶିକ୍ଷା କରିବା ଆବଶ୍ୟକ । ଭାଷାଟିର ବ୍ୟାକରଣ ଶିକ୍ଷାଲାଭ କଲେ ଭାଷାଟି ଶିକ୍ଷା ଲାଭ କରିବା ଅତି ସହଜସାଧ୍ୟ ହୁଏ । ଭାଷାଟିର ବ୍ୟାକରଣ ଲେଖିବାକୁ ଯାଇ କେତେକ କ୍ଷେତ୍ରରେ ଦୋଷ ତ୍ରୁଟି ବା କେତେକ ଅତି ଦରକାରୀ କଥା ମଧ୍ୟ ନ ଲେଖିବା ଅସମ୍ଭବ ନୁହେଁ । ସେଥିପାଇଁ କ୍ଷମା ଏବଂ ଗବେଷକଙ୍କଠାରୁ ଉପଯୁକ୍ତ ଉପଦେଶ ପ୍ରାର୍ଥନୀୟ ।

ମୁଣ୍ଡାରୀ ଭାଷାଟି ଏକ ହୋଇଥିଲେ ମଧ୍ୟ ଅଞ୍ଚଳଗତ ପାର୍ଥକ୍ୟ ଦୃଷ୍ଟିରୁ କେତେକ ଶବ୍ଦର ଅର୍ଥ ଏବଂ ଭାଷାର ବ୍ୟବହାରରେ ପାର୍ଥକ୍ୟ ଦେଖାଦେବା ସୁନିଶ୍ଚିତ । କିନ୍ତୁ ତାହା ସେତେ ଗୁରୁତର ନୁହେଁ ଏବଂ ସେ ଭଳି ବ୍ୟବହାର ଦ୍ୱାରା ଭାଷାଟି ବୁଝିବାରେ କୌଣସି ଅସୁବିଧା ହେବନାହିଁ କିମ୍ବା ତାହା ଏକ ଭୁଲ ବୋଲି କହି ହେବନାହିଁ । ଅଞ୍ଚଳଗତ ପାର୍ଥକ୍ୟ ଦୃଷ୍ଟିରୁ ଭାଷାଟିର ବ୍ୟବହାର ଯାହା ହେଉ ନା କାହିଁକି, ଭାଷାଟିର ବ୍ୟାକରଣ ସବୁବେଳେ ଅପରିବର୍ତ୍ତିତ ରହିବ ।

ମୁଣ୍ଡାରୀ ଭାଷାଟି ଓଡ଼ିଆ କିମ୍ବା ଅନ୍ୟ କୌଣସି ଲିପିରେ ଲିପିବଦ୍ଧ କଲେ ସୁଦ୍ଧା ତାହା ସ୍ପଷ୍ଟଭାବରେ ଆଦୌ ଲେଖିବା ସମ୍ଭବପର ନୁହେଁ । ତେଣୁ ମୁଣ୍ଡାରୀ ଭାଷାରେ ବ୍ୟବହୃତ ଶବ୍ଦଗୁଡ଼ିକର ପ୍ରକୃତ ଉଚ୍ଚାରଣ ଜାଣିବା ନିମିତ୍ତ "ଆଦିବାସୀ ଭାଷା ଓ ସଂସ୍କୃତି ଶିକ୍ଷାନୁଷ୍ଠାନ"ଦ୍ୱାରା ନିଯୁକ୍ତ ମୁଣ୍ଡାରୀ ଅଧ୍ୟାପକମାନଙ୍କର ପରାମର୍ଶ ନିତାନ୍ତ ପ୍ରୟୋଜନ ।

## ପୁରୁଷ ଓ ବଚନ

### (୧) ପ୍ରଥମ ପୁରୁଷ

| | ଓଡ଼ିଆ | ମୁଣ୍ଡାରୀ |
|---|---|---|
| ଏକ ବଚନ | ମୁଁ | ଆଞ୍ଜ୍ |
| ଦ୍ୱି ବଚନ | ଆମେ ଦୁହେଁ | ଆଲିଂ |
| ବହୁବଚନ | ଆମ୍ଭେମାନେ | ଆଲେ |

(୨) ଦ୍ୱିତୀୟ ପୁରୁଷ

| | ଓଡ଼ିଆ | ମୁଣ୍ଡାରୀ |
|---|---|---|
| ଏକ ବଚନ | ତୁ | ଆମ୍ |
| ଦ୍ୱିବଚନ | ତୁମେ ଦୁହେଁ | ଆବେନ୍ |
| ବହୁ ବଚନ | ତୁମ୍ଭେମାନେ | ଆପେ |

(୩) ତୃତୀୟ ପୁରୁଷ

| | ଓଡ଼ିଆ | ମୁଣ୍ଡାରୀ |
|---|---|---|
| ଏକ ବଚନ | ସେ | ଆଏ୍ |
| ଦ୍ୱିବଚନ | ସେ ଦୁହେଁ | ଆକିନ୍ |
| ବହୁ ବଚନ | ସେମାନେ | ଆକ |

ପ୍ରତ୍ୟୟ

(୧) ପ୍ରଥମ ପୁରୁଷ

ଏକ ବଚନ—"ମୁଁ" ନିମିତ୍ତ "ଞ୍" ପ୍ରତ୍ୟୟ
ଦ୍ୱିବଚନ—"ଆମେ ଦୁହେଁ" ନିମିତ୍ତ "ଲିଂ" ପ୍ରତ୍ୟୟ
ବହୁ ବଚନ—"ଆମ୍ଭେମାନେ" ନିମିତ୍ତ "ଲେ" ପ୍ରତ୍ୟୟ

(୨) ଦ୍ୱିତୀୟ ପୁରୁଷ

ଏକ ବଚନ—"ତୁ" ନିମିତ୍ତ "ମ୍" ପ୍ରତ୍ୟୟ
ଦ୍ୱିବଚନ—"ତୁମେ ଦୁହେଁ" ନିମିତ୍ତ "ବେନ୍" ପ୍ରତ୍ୟୟ
ବହୁ ବଚନ—"ତୁମ୍ଭେମାନେ" ନିମିତ୍ତ "ପେ" ପ୍ରତ୍ୟୟ

(୩) ତୃତୀୟ ପୁରୁଷ

ଏକ ବଚନ—"ସେ" ନିମିତ୍ତ "ଏ" ପ୍ରତ୍ୟୟ
ଦ୍ୱିବଚନ—"ସେ ଦୁହେଁ" ନିମିତ୍ତ "କିନ୍" ପ୍ରତ୍ୟୟ
ବହୁ ବଚନ—"ସେମାନେ" ନିମିତ୍ତ "କ" ପ୍ରତ୍ୟୟ

**ପ୍ରତ୍ୟୟଗୁଡ଼ିକର ବ୍ୟବହାର :—**

ମୁଣ୍ଡାରୀ ଭାଷାରେ ଉପରିଲିଖିତ ବଚନ ଓ ପୁରୁଷ ଅନୁଯାୟୀ ବ୍ୟବହାର କରାଯାଉଥିବା ପ୍ରତ୍ୟୟଗୁଡ଼ିକର ପ୍ରାଧାନ୍ୟ ଯେ କୌଣସି ବାକ୍ୟରେ ଅତ୍ୟଧିକ ମାତ୍ରାରେ ପରିଲକ୍ଷିତ ହୁଏ । ଏହି ପ୍ରତ୍ୟୟଗୁଡ଼ିକ ବଚନ ଓ ପୁରୁଷ ଅନୁଯାୟୀ କର୍ତ୍ତା, କର୍ମ କିମ୍ବା କ୍ରିୟାରେ ସଂଯୋଗ କରାଯାଏ ।

ନିୟମ (୧)—ଉକ୍ତ ପ୍ରତ୍ୟୟଗୁଡ଼ିକ ଅକର୍ମକ କ୍ରିୟା ଥିବା ବାକ୍ୟମାନଙ୍କରେ କର୍ତ୍ତାରେ କିମ୍ବା କ୍ରିୟାରେ ଯୋଗ କରାଯାଏ । କିନ୍ତୁ ଉଭୟ କର୍ତ୍ତା ଓ କ୍ରିୟାରେ ଏକା ସାଙ୍ଗରେ ଉକ୍ତ ପ୍ରତ୍ୟୟ ଯୋଗ କରାଯାଏ ନାହିଁ । ଉଦାହରଣ—

(୧) ପ୍ରଥମ ପୁରୁଷ

| | |
|---|---|
| ଏକ ବଚନ—ଆଇଂ | ସେନଃତାନା |
| କିମ୍ବା—ଆଞ୍ | ସେନଃତାନାଞ୍ |
| ଓଡ଼ିଆ—ମୁଁ | ଯାଉଛି |
| ଦ୍ୱି ବଚନ—ଆଲିଂଲିଂ | ସେନଃତାନା |
| କିମ୍ବା—ଆଲିଂ | ସେନଃତାନାଲିଂ |
| ଓଡ଼ିଆ—ଆମେ ଦୁହେଁ | ଯାଉଛୁ |
| ବହୁ ବଚନ—ଆଲେଲେ | ସେନଃତାନା |
| କିମ୍ବା—ଆଲେ | ସେନଃତାନାଲେ |
| ଓଡ଼ିଆ—ଆମ୍ଭେମାନେ | ଯାଉଛୁ |

(୨) ଦ୍ୱିତୀୟ ପୁରୁଷ

| | |
|---|---|
| ଏକ ବଚନ—ଆମେଁମ୍ | ସେନଃତାନା |
| କିମ୍ବା—ଆମ୍ | ସେନଃତାନାମେଁ |
| ଓଡ଼ିଆ—ତୁ | ଯାଉଛୁ |
| ଦ୍ୱି ବଚନ—ଆବେନ୍‌ବେନ୍ | ସେନଃତାନା |
| କିମ୍ବା—ଆବେନ୍ | ସେନଃତାନାବେନ୍ |
| ଓଡ଼ିଆ—ତୁମେ ଦୁହେଁ | ଯାଉଛ |
| ବହୁ ବଚନ—ଆପେପେ | ସେନଃତାନା |
| କିମ୍ବା—ଆପେ | ସେନଃତାନାପେ |
| ଓଡ଼ିଆ—ତୁମ୍ଭେମାନେ | ଯାଉଛ |

(୩) ତୃତୀୟ ପୁରୁଷ

| | |
|---|---|
| ଏକ ବଚନ—ଆଏଏ୍ | ସେନଃତାନା |
| କିମ୍ବା—ଆଏ୍ | ସେନଃତାନାଏ୍ |
| ଓଡ଼ିଆ—ସେ | ଯାଉଛି |

ଦ୍ୱିବଚନ—ଆକନ୍‌କନ୍‌ ସେନଃଡାନା
କମ୍ବା—ଆକନ୍‌ ସେନଃଡାନାକନ୍‌
ଓଡ଼ିଆ—ସେ ଦୁହେଁ ଯାଉଛନ୍ତି
ବହୁ ବଚନ—ଆକକ ସେନଃଡାନା
କମ୍ବା—ଆକ ସେନଃଡାନାକ
ଓଡ଼ିଆ—ସେମାନେ ଯାଉଛନ୍ତି

ନିୟମ (୨)—ସକର୍ମକ କ୍ରିୟା ଥିବା ବାକ୍ୟରେ ଉକ୍ତ ପ୍ରତ୍ୟୟଗୁଡ଼ିକ ବଚନ ଓ ପୁରୁଷ ଅନୁଯାୟୀ କର୍ତ୍ତାରେ ନ ଲଗି କର୍ମରେ କମ୍ବା କ୍ରିୟାରେ ସଂଯୋଗ କରାଯାଏ । ଏକା ସାଙ୍ଗରେ କର୍ମ ଓ କ୍ରିୟାରେ ଉକ୍ତ ପ୍ରତ୍ୟୟ ସଂଯୋଗ କରାଯାଏ ନାହିଁ । ଉଦାହରଣ—

(୧) ପ୍ରଥମ ପୁରୁଷ

ଏକ ବଚନ—ଆଞ୍ଜ୍‌ ସ୍କୁଲେଞ୍ଜ୍‌ ସେନାଃଡାନା
କମ୍ବା—ଆଞ୍ଜ୍‌ ସ୍କୁଲ୍‌ ସେନଃଡାନାଞ୍ଜ୍‌
ଓଡ଼ିଆ—ମୁଁ ସ୍କୁଲକୁ ଯାଉଛି
ଦ୍ୱିବଚନ—ଆଲିଂ ସ୍କୁଲଲିଂ ସେନଃଡାନା
କମ୍ବା—ଆଲିଂ ସ୍କୁଲ୍‌ ସେନଃଡାନାଲିଂ
ଓଡ଼ିଆ—ଆମେଦୁହେଁ ସ୍କୁଲକୁ ଯାଉଛୁ
ବହୁ ବଚନ—ଆଲେ ସ୍କୁଲଲେ ସେନଃଡାନା
କମ୍ବା—ଆଲେ ସ୍କୁଲ୍‌ ସେନଃଡାନାଲେ
ଓଡ଼ିଆ—ଆମ୍ଭେମାନେ ସ୍କୁଲକୁ ଯାଉଛୁ

(୨) ଦ୍ୱିତୀୟ ପୁରୁଷ

ଏକ ବଚନ—ଆମ୍‌ ସ୍କୁଲେମ୍‌ ସେନଃଡାନା
କମ୍ବା—ଆମ୍‌ ସ୍କୁଲ୍‌ ସେନଃଡାନାମେ
ଓଡ଼ିଆ—ତୁ ସ୍କୁଲକୁ ଯାଉଛୁ
ଦ୍ୱିବଚନ—ଆବେନ୍‌ ସ୍କୁଲ୍‌ବେନ୍‌ ସେନଃଡାନା
କମ୍ବା—ଆବେନ୍‌ ସ୍କୁଲ୍‌ ସେନଃଡାନାବେନ
ଓଡ଼ିଆ—ତୁମେ ଦୁହେଁ ସ୍କୁଲକୁ ଯାଉଛ
ବହୁ ବଚନ—ଆପେ ସ୍କୁଲପେ ସେନଃଡାନା
କମ୍ବା—ଆପେ ସ୍କୁଲ୍‌ ସେନଃଡାନାପେ
ଓଡ଼ିଆ—ତୁମ୍ଭେମାନେ ସ୍କୁଲକୁ ଯାଉଛ

(୩) ତୃତୀୟ ପୁରୁଷ

ଏକବଚନ—ଆଏ୍ ସ୍କୁଲେଏ୍ ସେନଃତୋନା
କମ୍ବା—ଆଏ୍ ସ୍କୁଲ୍ ସେନଃତାନାଏ୍
ଓଡ଼ିଆ—ସେ ସ୍କୁଲକୁ ଯାଉଛି ।
ଦ୍ୱିବଚନ—ଆକିନ୍ ସ୍କୁଲ୍‌କିନ୍ ସେନଃତାନା
କମ୍ବା—ଆକିନ୍ ସ୍କୁଲ୍ ସେନଃତାନାକିନ୍
ଓଡ଼ିଆ—ସେ ଦୁହେଁ ସ୍କୁଲକୁ ଯାଉଛନ୍ତି ।
ବହୁବଚନ—ଆକ ସ୍କୁଲ୍‌କ ସେନଃତାନା
କମ୍ବା—ଆକ ସ୍କୁଲ୍ ସେନଃତାନାକ
ଓଡ଼ିଆ—ସେମାନେ ସ୍କୁଲକୁ ଯାଉଛନ୍ତି ।

ଉପରଲିଖିତ ଉଦାହରଣମାନଙ୍କରେ ପ୍ରଥମ ବାକ୍ୟଟିରେ ଉକ୍ତ ପ୍ରତ୍ୟୟଟି କର୍ମରେ ସଂଯୋଗ କରାଯାଇଛି ଏବଂ ଦ୍ୱିତୀୟ ବାକ୍ୟଟିରେ ଉକ୍ତ ପ୍ରତ୍ୟୟଟି କ୍ରିୟା ସହିତ ସଂଯୋଗ କରାଯାଇଛି । ଏପରି କରାଯାଇଥିଲେ ସୁଦ୍ଧା ବାକ୍ୟଟିର ଅର୍ଥଟି ପୂର୍ବଭଳି ଅପରିବର୍ତ୍ତିତ ହୋଇ ରହିଛି ।

ବି: ଦ୍ର:—ସାଧାରଣତଃ ବାକ୍ୟଟି ଶ୍ରୁତିମଧୁର ହେବା ନିମିତ୍ତ ଉକ୍ତ ପ୍ରତ୍ୟୟଗୁଡ଼ିକ ସକର୍ମକ କ୍ରିୟା ଥିବା ବାକ୍ୟରେ କ୍ରିୟାରେ ନ ଲଗି କର୍ମରେ ଲଗେ ଏବଂ ଯଦି ଉକ୍ତ ପ୍ରତ୍ୟୟଗୁଡ଼ିକ କ୍ରିୟାରେ ଲଗାଯାଏ ତାହେଲେ ବାକ୍ୟଟି ଶ୍ରୁତିମଧୁର ହେବା ନିମିତ୍ତ କର୍ମରେ ବିଭକ୍ତିର ପ୍ରତ୍ୟୟ ଲଗେ ।

ଉଦାହରଣ :—

(୧) ଆଞ୍ଜ ସ୍କୁଲେଞ୍ଜ ସେନଃତାନା
(୨) ଆଞ୍ଜ୍ ସ୍କୁଲ୍ ସେନଃତାନାଞ୍ଜ୍
(୩) ଆଞ୍ଜ୍ ସ୍କୁଲତେ ସେନଃତାନାଞ୍ଜ୍
ଓଡ଼ିଆ—ମୁଁ ସ୍କୁଲକୁ ଯାଉଛି

ଉପରଲିଖିତ ତିନୋଟି ବାକ୍ୟ ମଧ୍ୟରୁ ପ୍ରଥମ ଓ ତୃତୀୟ ବାକ୍ୟଦ୍ୱୟ ଶ୍ରୁତିମଧୁର ଅଟେ କିନ୍ତୁ ଦ୍ୱିତୀୟ ବାକ୍ୟଟି ସେତେ ଶ୍ରୁତିମଧୁର ନୁହେଁ । କିନ୍ତୁ ତିନୋଟିଯାକ ବାକ୍ୟର ଅର୍ଥ ସମାନ ଅଟେ । ତୃତୀୟ ବାକ୍ୟଟିରେ ଉକ୍ତ ପ୍ରତ୍ୟୟଟି କର୍ମରେ ନ ଲଗି କ୍ରିୟାରେ ସଂଯୋଗ କରାଯାଇଛି । ତେଣୁ

"ସ୍କୁଲ୍‌କୁ" କର୍ମରେ ଦ୍ୱିତୀୟା ବିଭକ୍ତି ଏକବଚନର "ତେ" ପ୍ରତ୍ୟୟ ଲାଗି "ସ୍କୁଲ୍‌ତେ" ହେଲା । ଦ୍ୱିତୀୟ ବାକ୍ୟଟି ବ୍ୟାକରଣ ନିୟମ ଦୃଷ୍ଟିରୁ ଭୁଲ୍ ହୋଇ ନ ଥିଲେ ସୁଦ୍ଧା ତାହା ସାଧାରଣତଃ ବିଶେଷ ବ୍ୟବହାର କରାଯାଏ ନାହିଁ । କିନ୍ତୁ ଉକ୍ତ ବାକ୍ୟ ବ୍ୟବହାର କଲେ ମଧ୍ୟ କିଛି କ୍ଷତି ନାହିଁ; କାରଣ ତାହା ଠିକ୍, ଅନ୍ୟ ଦୁଇଟି ବାକ୍ୟ ଯେଉଁ ଅର୍ଥ ପ୍ରକାଶ କରୁଛନ୍ତି, ତାହା ମଧ୍ୟ ଠିକ୍ ସେହି ଅର୍ଥ ପ୍ରକାଶ କରୁଛି ।

**ନିୟମ (୩)**

ସକର୍ମକ କ୍ରିୟା ଥିବା ବାକ୍ୟରେ ବିଭକ୍ତିର ପ୍ରତ୍ୟୟ କର୍ମରେ ଯୋଗକରି ପୁରୁଷ ଅନୁଯାୟୀ ବଚନର ପ୍ରତ୍ୟୟ ମଧ୍ୟ ଉକ୍ତ କର୍ମରେ ଯୋଗ କରାଯାଇପାରିବ ।

ଉଦାହରଣ :—

(୧) ଆଞ୍ଜ ସ୍କୁଲେଞ୍ଜ୍ ସେନଃତାନା

(୨) ଆଞ୍ଜ୍ ସ୍କୁଲ୍‌ତେ ସେନଃତାନାଞ୍ଜ୍

(୩) ଆଞ୍ଜ୍ ସ୍କୁଲ୍‌ତେଞ୍ଜ୍ ସେନଃତାନା

ଓଡ଼ିଆ— ମୁଁ ସ୍କୁଲକୁ ଯାଉଛି ।

ଉପରଲିଖିତ ତିନୋଟି ବାକ୍ୟ ମଧ୍ୟରୁ ପ୍ରଥମ ବାକ୍ୟଟିରେ ଉକ୍ତ ପ୍ରତ୍ୟୟ "ଞ୍ଜ" କର୍ମରେ ଯୋଗ କରାଯାଇଛି । ଦ୍ୱିତୀୟ ବାକ୍ୟଟିରେ ଉକ୍ତ ପ୍ରତ୍ୟୟଟି କର୍ମରେ ଯୋଗ କରି ନ ଯାଇ କ୍ରିୟାରେ ଯୋଗକରାଯାଇଛି ଏବଂ ବାକ୍ୟଟି ଶ୍ରୁତିମଧୁର ହେବା ନିମିତ୍ତ "ସ୍କୁଲ୍‌କୁ" କର୍ମରେ ଦ୍ୱିତୀୟାବିଭକ୍ତି ଏକବଚନର ପ୍ରତ୍ୟୟ "ତେ" ସଂଯୋଗ କରାଯାଇଛି । ସେହିପରି ତୃତୀୟ ବାକ୍ୟରେ "ସ୍କୁଲକୁ" କର୍ମରେ ଦ୍ୱିତୀୟାବିଭକ୍ତି ଏକବଚନର ପ୍ରତ୍ୟୟ "ତେ" ସହିତ ପ୍ରଥମପୁରୁଷ ଏକବଚନର ପ୍ରତ୍ୟୟ "ଞ୍ଜ୍" ଯୋଗ କରାଯାଇ "ସ୍କୁଲତେଞ୍ଜ୍" କରାଯାଇଛି । ଏହିପରି କରାଯାଇଥିଲେ ସୁଦ୍ଧା ବାକ୍ୟଗୁଡ଼ିକର ଅର୍ଥ ସମାନ ଅଛି । ଏହିପରି ଅନ୍ୟାନ୍ୟ ବାକ୍ୟମାନଙ୍କରେ ମଧ୍ୟ କରାଯାଇପାରିବ । ଯଥା—

(୧) ଆକ ସ୍କୁଲ୍‌କ ସେନଃତାଣା

(୨) ଆକ ସ୍କୁଲତେ ସେନଃତାନାକ

(୩) ଆକ ସ୍କୁଲତେକ୍ ସେନଃତାନା

**ନିୟମ (୪)**

ସକର୍ମକ କ୍ରିୟା ଥିବା ବାକ୍ୟରେ ଯଦି ଏକାଧିକ କର୍ମ ଥାଏ ତାହେଲେ ଉକ୍ତ ପ୍ରତ୍ୟୟଟି କ୍ରିୟାପାଖରେ ଥିବା କର୍ମରେ ଲାଗେ ଏବଂ ଅନ୍ୟ କର୍ମଟିରେ ବିଭକ୍ତିର ପ୍ରତ୍ୟୟ ଲଗେ ।

ଉଦାହରଣ :—

ଆକ ସ୍କୁଲ୍ ତେ ଅଲ୍ କ ସେନଃଚାନା

ଓଡ଼ିଆ—ସେମାନେ ସ୍କୁଲକୁ ପଢ଼ିବାକୁ ଯାଉଛନ୍ତି ।

ଏହି ବାକ୍ୟଟିରେ "ସ୍କୁଲକୁ" ଏବଂ "ପଢ଼ିବାକୁ" ଏହିପରି ଦୁଇଟି କର୍ମ ଅଛି । ସେଥିମଧ୍ୟରୁ ପ୍ରଥମଟି ଗୌଣ କର୍ମ ଏବଂ ଦ୍ୱିତୀୟଟି ମୁଖ୍ୟ କର୍ମ । ଏହି ମୁଖ୍ୟ କର୍ମଟି କ୍ରିୟାପାଖରେ ଥିବାରୁ ପୁରୁଷ ଅନୁଯାୟୀ ବଚନର ପ୍ରତ୍ୟୟ "କ" ଟି ଉକ୍ତ କର୍ମରେ ଲଗି "ଅଲ୍ କ" ହେଲା ଏବଂ ଗୌଣ କର୍ମରେ ଚତୁର୍ଥୀ ବିଭକ୍ତି ଏକବଚନର ପ୍ରତ୍ୟୟ "ତେ" ଲଗି "ସ୍କୁଲ୍ ତେ" ହେଲା ।

ବି: ଦ୍ର:—ପ୍ରଥମପୁରୁଷ ଦ୍ୱିବଚନ ଓ ବହୁବଚନ ନିମିତ୍ତ ଦୁଇପ୍ରକାର ବ୍ୟବହାର ପରିଲକ୍ଷିତ ହୁଏ । ଯଥା—

(୧) ଦ୍ୱିବଚନ—ଆମେଦୁହେଁ—ଆଲିଂ (ଲିଂ)

(୨) ଦ୍ୱିବଚନ – ଆମେଦୁହେଁ—ଆଲାଂ (ଲାଂ)

(୩) ବହୁବଚନ—ଆମ୍ଭେମାନେ—ଆଲେ (ଲେ)

(୪) ବହୁବଚନ—ଆମ୍ଭେମାନେ—ଆବୁ (ବୁ)

ଉପରୋକ୍ତ ଉଦାହରଣଗୁଡ଼ିକରେ ପ୍ରଥମ ଉଦାହରଣଟି **Exclusive** ଓ ଦ୍ୱିତୀୟ ଉଦାହରଣଟି **Inclusive** ରୂପେ ବ୍ୟବହୃତ ହୁଏ ଏବଂ ଉଭୟ ବ୍ୟାକରଣ ଅନ୍ତର୍ଭୁକ୍ତ । ତେଣୁ ସେହି ଅନୁସାରେ ତାର ପ୍ରତ୍ୟୟ ମଧ୍ୟ ବାକ୍ୟରେ ବ୍ୟବହୃତ ହୁଏ ।

ବିଭିନ୍ନପ୍ରକାର ବାକ୍ୟ ଅନୁଯାୟୀ ଉକ୍ତ ପ୍ରତ୍ୟୟଗୁଡ଼ିକର ବ୍ୟବହାର—

**(1) Affirmative sentence—Affirmative sentence** ରେ ଠିକ୍ ଉପରୋକ୍ତ ନିୟମ ଅନୁସାରେ ପ୍ରତ୍ୟୟଗୁଡ଼ିକ ଲଗିବ ।

(2) Negative sentence—Negative sentence ମାନଙ୍କରେ ଉକ୍ତ ପ୍ରତ୍ୟୟଟି କେବଳ Negative ସୂଚକ ପ୍ରତ୍ୟୟଟିରେ ଲଗେ ।

ଉଦାହରଣ :—

ପ୍ରଥମ ପୁରୁଷ

ଏକବଚନ (୧) ଅଞ୍ଜ୍ କାଞ୍ଜ୍ ସେନଃତାନା
ଦ୍ୱିବଚନ (୨) ଆଲଂ କାଲଂ ସେନଃତାନା
ବହୁବଚନ (୩) ଆଲେ କାଲେ ସେନଃତାନା

ଦ୍ର: ଦ୍ର:—ଉକ୍ତ ପ୍ରତ୍ୟୟଟି Negative ସୂଚକ ପ୍ରତ୍ୟୟରେ ନ ଲଗାଇ କ୍ରିୟାରେ ଲଗାଇଲେ ମଧ୍ୟ ନିୟମ ଦୃଷ୍ଟିରୁ କିଛି ଅସୁବିଧା ନାହିଁ; କିନ୍ତୁ ତାହା ଶ୍ରୁତିମଧୁର ହୁଏ ନାହିଁ ଓ ସାଧାରଣତଃ ବ୍ୟବହାର କରାଯାଏ ନାହିଁ ।

(3) Exclamatory sentence ଗୁଡ଼ିକରେ ଉକ୍ତ ପ୍ରତ୍ୟୟ କ୍ରିୟାରେ ସଂଯୋଗ କରାଯାଏ ।

(4) Request ବୁଝାଉଥିବା ବାକ୍ୟରେ କେବଳ କ୍ରିୟାରେ ଉକ୍ତ ପ୍ରତ୍ୟୟ ଲଗେ ।

ଉଦାହରଣ :—

(୧) ଆପେ ସ୍କୁଲ୍ ତେ ସେନଃପେ
ଓଡ଼ିଆ—ତୁମ୍ଭେମାନେ ସ୍କୁଲକୁ ଯାଅ ।

(5) Direction ବୁଝାଉଥିବା ବାକ୍ୟରେ କେବଳ କ୍ରିୟାରେ ଉକ୍ତ ପ୍ରତ୍ୟୟ ଲଗେ ।

ଉଦାହରଣ :—

ସେନଃମେ
ଓଡ଼ିଆ—ଯାଅ
ହିଜୁଃପେ—ଆସ ଇତ୍ୟାଦି

# ବିଭକ୍ତି

ମୁଣ୍ଡାରୀ ଭାଷାରେ ବ୍ୟବହୃତ ବିଭକ୍ତିସୂଚକ ପ୍ରତ୍ୟୟଗୁଡ଼ିକ ଦୁଇ ଭାଗରେ ବିଭକ୍ତ । ଯଥା—(୧) ସଜୀବ (୨) ନିର୍ଜୀବ

ଏକବଚନ

| ବିଭକ୍ତି | ସଜୀବ | ନିର୍ଜୀବ |
|---|---|---|
| ପ୍ରଥମା ବିଭକ୍ତି | ଏ୍ଃ ବା ଟାଏଃ୍ | ଟା |
| ଦ୍ୱିତୀୟା ବିଭକ୍ତି | କେ | ତେ |
| ତୃତୀୟା ବିଭକ୍ତି | ତେ | ତେ |
| ଚତୁର୍ଥୀ ବିଭକ୍ତି | କେ | ତେ |
| ପଞ୍ଚମୀ ବିଭକ୍ତି | ତାଃ ତେୟାଜ୍ | ତେୟାଜ୍ |
| ଷଷ୍ଠୀ ବିଭକ୍ତି | ଆଃ | ରେୟାଃ |
| ସପ୍ତମୀ ବିଭକ୍ତି | ତାଃରେ | ରେ |

ଉଦାହରଣ: —

ପ୍ରଥମା—(୧)ମୁଣ୍ଡାରୀ—ହଲଏ୍ଃ ସେନଃତାନା
(ସଜୀବ) ଓଡ଼ିଆ—ମଣିଷଟା ଯାଉଛି ।
(୨) ମୁଣ୍ଡାରୀ—ହଲଟାଏଃ ସେନଃତାନା
ଓଡ଼ିଆ—ମଣିଷଟା ଯାଉଛି ।

ପ୍ରଥମା—(୧) ମୁଣ୍ଡାରୀ —ଧିରଟା ଗୁଲଡାନା
(ନିର୍ଜୀବ ଓଡ଼ିଆ —ପଥରଟା ଗଡ଼ୁଛି

ଦ୍ୱିତୀୟା—(୧) ରାମକେ ଅମାଇମେ (ମୁଣ୍ଡାରୀ)
(ସଜୀବ) ରାମକୁ ଦିଅ (ଓଡ଼ିଆ)

ଦ୍ୱିତୀୟା— (୧) ସ୍କୁଲ୍ ତେ ସେନଃ ମେ (ମୁଣ୍ଡାରୀ)
(ନିର୍ଜୀବ) ସ୍କୁଲକୁ ଯାଅ (ଓଡ଼ିଆ)

ତୃତୀୟା—ହାଡ଼ାତେଞ୍ଜ ସିଡ଼ାନା (ମୁଣ୍ଡାରୀ)
(ସଜୀବ) ମୁଁ ବଳଦ ଦ୍ୱାରା ହଳ କରୁଛି (ଓଡ଼ିଆ)

ତୃତୀୟା—ଗାଡ଼ିତେ ସେନଃ ମେ (ମୁଣ୍ଡାରୀ)
(ନିର୍ଜୀବ) ଗାଡ଼ିଦ୍ୱାରା ଯାଅ (ଓଡ଼ିଆ)

ଚତୁର୍ଥୀ—କଏକେ କଏ ଅମାଇପେ (ମୁଣ୍ଡାରୀ)

(ସର୍ଜୀବ) ଖିକାଷ୍କୁ ଖିକ ଦିଅ (ମୁଣ୍ଡାରୀ)
ଚତୁର୍ଥୀ—ଗାଡ଼ାତେଞ୍ଜ ସେନଃତାନା (ମୁଣ୍ଡାରୀ)
(ନର୍ଜୀବ) ନଦୀକୁ ଯାଉଛି (ଓଡ଼ିଆ)
ପଞ୍ଚମୀ—ଅଞ୍ଜତାଃତେୟ୍ୟାଜ ଇଦିଃମେ ମୁଣ୍ଡାରୀ)
(ସର୍ଜୀବ) ମୋ'ଠାରୁ ନିଅ (ଓଡ଼ିଆ)
ପଞ୍ଚମୀ—ଓକାଃତେୟ୍ୟାଦ୍ ଇଦିଃମେ (ମୁଣ୍ଡାରୀ)
(ନର୍ଜୀବ) ଘରୁ ନିଅ (ଓଡ଼ିଆ)
ଷଷ୍ଠୀ—ରାମଆଃ ବନ୍ଧୁ (ମୁଣ୍ଡାରୀ)
(ସର୍ଜୀବ) ରାମର ବନ୍ଧୁ (ଓଡ଼ିଆ)
ଷଷ୍ଠୀ—ଦାରୁରେୟ୍ୟାଃ ପାରକମ (ମୁଣ୍ଡାରୀ)
(ନର୍ଜୀବ) କାଠର ଖଟ (ଓଡ଼ିଆ)
ସପ୍ତମୀ—ଆଞ୍ଜତାଃରେ ଦଧିତାମ୍ (ମୁଣ୍ଡାରୀ)
(ସର୍ଜୀବ) ମୋ ଠାରେ ରଖି ଦିଅ (ଓଡ଼ିଆ)
ସପ୍ତମୀ—ଅଲାଃରେ ଦଅିତାମ (ମୁଣ୍ଡାରୀ)
(ନର୍ଜୀବ) ଘରେ ରଖିଦିଅ (ଓଡ଼ିଆ)

ବି: ଦ୍ର:—ଉପରୋକ୍ତ ବିଭକ୍ତି ଓ ପ୍ରତ୍ୟୟ ଛଡ଼ା ଆହୁରି କେତେକ ସ୍ୱତନ୍ତ୍ର ବିଭକ୍ତି ଓ ପ୍ରତ୍ୟୟ ଅଛି କିନ୍ତୁ ସେଗୁଡ଼ିକର ବ୍ୟବହାର ସେତେ ବହୁଳ ମାତ୍ରାରେ ପରିଲକ୍ଷିତ ହୁଏ ନାହିଁ । ହେଲେ ସୁଦ୍ଧା ମୁଣ୍ଡାରୀ ଭାଷାର ବ୍ୟାକରଣ ପୂର୍ଣ୍ଣ କରିବା ଦୃଷ୍ଟିରୁ ସେଗୁଡ଼ିକ ପୁରାପୁରି ତ୍ୟାଗ କରିବା ଅସମ୍ଭବ ।

## ଦ୍ୱିବଚନ ଓ ବହୁବଚନ

ଏକ ବଚନରେ ଯେଉଁ ବିଭକ୍ତି ଓ ପ୍ରତ୍ୟୟ ବ୍ୟବହୃତ ହୁଏ ଦ୍ୱିବଚନ ଓ ବହୁ ବଚନରେ ମଧ୍ୟ ଠିକ୍ ସେହି ବିଭକ୍ତି ଓ ପ୍ରତ୍ୟୟ ବ୍ୟବହୃତ ହୁଏ । କିନ୍ତୁ ସେହି ବିଭକ୍ତି ସହ ଦ୍ୱିବଚନ ବା ବହୁ ବଚନ ସୂଚକ ପ୍ରତ୍ୟୟ ଯୋଗ କରାଯାଏ ।

ଦ୍ୱିବଚନ

| ବିଭକ୍ତି | ସଜୀବ | ନିର୍ଜୀବ |
| --- | --- | --- |
| ପ୍ରଥମା | କନ୍ | କନ୍ |
| ଦ୍ୱିତୀୟା | କନ୍‌କେ | (ବ୍ୟବହାର ନାହିଁ) |
| ତୃତୀୟା | କନ୍ ତେ | କନ୍ ତେ |
| ଚତୁର୍ଥୀ | କନ୍ କେ | (ବ୍ୟବହାର ନାହିଁ) |
| ପଞ୍ଚମୀ | କନ୍‌ତାଃ ତେୟ୍ୱାଦ୍ | କନ୍‌ତେୟ୍ୱାଦ୍ |
| ଷଷ୍ଠୀ | କନ୍ ଆଃ | କନ୍‌ରେୟ୍ୱାଃ |
| ସପ୍ତମୀ | କନ୍‌ତାଃରେ | କନ୍‌ରେ |

ବହୁବଚନ

| ବିଭକ୍ତି | ସଜୀବ | ନିର୍ଜୀବ |
| --- | --- | --- |
| ପ୍ରଥମା | କ | କ |
| ଦ୍ୱିତୀୟା | କ କେ | (ବ୍ୟବହାର ନାହିଁ) |
| ତୃତୀୟା | କ ତେ | କ ତେ |
| ଚତୁର୍ଥୀ | କ କେ | (ବ୍ୟବହାର ନାହିଁ) |
| ପଞ୍ଚମୀ | କତାଃତେୟ୍ୱାଦ୍ | କତେୟ୍ୱାଦ୍ |
| ଷଷ୍ଠୀ | କଆଃ | କରେୟ୍ୱାଃ |
| ସପ୍ତମୀ | କତାରେ | କରେ |

# TRIBAL DIALECT TEST, 1978 ( Mundari )

Sundargarh & Rourkela, Bonai, Udala

Full Marks—100, Written 75+Viva Voce—25

Time—2 Hours Written. Viva Voce—3 P. M. to onwards

*( Please answer all questions )*

୧- ନିମ୍ନଲିଖିତ ଯେ କୌଣସି ୧୦ ଗୋଟି ଶବ୍ଦର ଓଡ଼ିଆ ପ୍ରତିଶବ୍ଦ ଲେଖି ଓଡ଼ିଆରେ ବାକ୍ୟ ରଚନା କରନ୍ତୁ । ( ୧୦

ବାବା, ଗୃଉଲ, ସମ୍ବାଲା, ଜଣ୍ଡ୍ରା, ମାନାଲ, ବଅ, ମେଦ, ମଗ୍ନ, ଡ଼ାଠା, କାଠା, ଆବା, ହାଗା, ଜିଲୁ, ତାମ୍କୁ, ସାଂସା ।

୨- ନିମ୍ନଲିଖିତ ଯେ କୌଣସି ୧୦ଟି ଶବ୍ଦର ଓଡ଼ିଆ ପ୍ରତିଶବ୍ଦ ଲେଖି ମୁଣ୍ଡାରୀଭାଷାରେ ବାକ୍ୟ ରଚନା କରନ୍ତୁ । ( ୧୦

ଗିଡ଼, ହାଦ୍, ସାଙ୍ଗ୍, ବାଲେଦାରୁ, ଜାଡ଼ା, ମିଡ଼, ସାଦମ୍, ସେତା, ସିଲବ୍, କୁଲଇ, ବାନା, ସେନ୍, ସାବ୍, ଆଲା, ସୁସୁନ, ଜମ୍, ଲେଲ୍, ଇସୁମ୍, ଲନ୍ଦା, ଦୁବ୍ ।

୩- ନିମ୍ନଲିଖିତ ଯେ କୌଣସି ୧୦ଟି ଶବ୍ଦର ଓଡ଼ିଆ ଅର୍ଥ ଲେଖନ୍ତୁ । ( ୧୦

ତାସୁାନ୍, ହାଇ, ହର, ଚକେ, ତଜୁ, ମେଣେଦ୍, ଠାକା, ବୁଲୁଂ, ସୁନୁମ୍, ତିଆ, ପାରକମ୍, କାନ୍ଚ, ଜନ୍ଃ, ହାଠ୍ାଃ, ଗୃଠୁ, ଘଳ, କର୍ସି, ଡ଼ବ୍ଚ ଥୁଇଲାଃ ।

୪- ନିମ୍ନଲିଖିତ ଯେ କୌଣସି ଦଶଟି ଶବ୍ଦର ମୁଣ୍ଡାରୀ ପ୍ରତିଶବ୍ଦ ଲେଖନ୍ତୁ । ( ୧୦

ଭାଲୁ, କୁକୁଡ଼ା, ମାଣ୍ଡିଆଁଜାଉ, ଅଣ୍ଡା, ମହୁଲମଦ, ଭଲ କାମ, ଭଲ ଲୁଗା, ଲୁଣ, ବସିବା, ପେଟ, ପିଠି, ଝିଣ, ଖୁର, ଠଙ୍କା, ଶସ୍ୟ, ତେଲ, କଣ୍ଟା, ବଷ୍ଠ, ମଶିଣା, ତକିଆ ।

୫- ନିମ୍ନଲିଖିତ ଯେ କୌଣସି ୧୦ ଗୋଟି ବାକ୍ୟର ଓଡ଼ିଆ ଅନୁବାଦ କରନ୍ତୁ । ( ୧୦

୧- ଦୁଗ୍ଂ ଗେଟେପ୍ । ୨- ଓଡ୍ରୁ ଅର୍ଂ ଗେଟେପ ।

୩- ସରକାର ଗୃଷ ନାଗିନ୍ ରେଣିଃ ଅମେସ୍ୟା ।

୪- ସେତା ଆଲେ ଅଲାଏଃ ହରସ୍ୟା ।

୫- ଗିବାଂ ହନ୍ କୁଲ୍ଏଃ ବୁଲ୍ଆ ।

୬- ହନ୍ କଟେକ ସ୍କୁଲ କୁଲ କପେ ।

୭- ଥାମାଅ ନଗଃମେ, ଆଲମ୍ ଗିଁଆ ଗଆ ।

୮- ବାନା ସାର୍ ସାର୍ତେ ଗାଆ ଦୁସ ।

୯- ଆଜାର ଯାନ୍‌ରେ ଗନୁ ଜମେଟେପ ।

୧୦- ଆମାଃ ହନ୍ ଗାଣା ଚମିନାଂ ।

୧୧- ଅଲ୍ ଇଡୁ କେରେ ବୁଗିସ୍ୟା ।

୧୨- ସୋସଇଟି ତେସ୍ୟାଃ ରେଣି ଆଉରେ ବୁଗିସ୍ୟା ।

୧୩- ଆପେ ହାତୁରେ ଅକଏ ଧାଡ ମେନଃ କଆ ।

୧୪- ସରକାର ଆପେ ନାଗିନ ସୁବିଧା ଯାଦାଏ ।

୧୫- ଆସ୍ୟାଁ ଅତେ ବାନଃ ।

୬- ନିମ୍ନଲିଖିତ ଯେ କୌଣସି ୧୦ ଗୋଟି ବାକ୍ୟର ମୁଣ୍ଡାରୀରେ ଅନୁବାଦ କରନ୍ତୁ । ( ୨୫

୧- ପିଲାଙ୍କୁ ସ୍କୁଲକୁ ପଠାଅ, ସରକାର ବହିପତ୍ର ମାଗଣା ଦେବେ ।

୨- ତୁମ ଗାଁରେ ଗରୀବ କଏ ଅଛି ।

୩- ଯାହା କହୁଛି ସତ କହୁଛି, ମିଛ କହୁ ନାହିଁ ।

୪- ସେ ମୃତ ବ୍ୟକ୍ତିକୁ ମୁଁ ଜାଣେ, ତା ନାମ ଘନଆ ।

୫- ମୋର ଜମି ସେ ନେଇଯାଉଛି । ମୋର ଜମି କହୁ ନାହିଁ ।

୬- ସେ ଚାଷ କରି ଚଳୁଛି, ଏବଂ ଛେଳି କୁକୁଡ଼ା ମଧ୍ୟ ପାଳୁଛି ।

୭- ଚାଷ କରି ଫସଲ ସୋସଇଟିରେ ବିକ୍ରି କର ।

୮- ବୟସ କେତେ ?
୯- ତୁମ ନାମ କ'ଣ ?
୧୦- ଘର କେଉଁଠି ?
୧୧- ଚୋରି କରିବା ପାପ ।
୧୨- ମଦ-ଖାଇବା ଖରାପ ।
୧୩- ମୁଁ କାମ କରି ଚାଲେ ।
୧୪- ରୋଗ ହେଲେ ଔଷଧ ଖାଇବ ।
୧୫- ଖାଦ୍ୟରେ ମାଛି ବସାଅ ନାହିଁ ।

ଆଦିବାସୀ ଭାଷାରେ ସ୍ଥାନେ ସ୍ଥାନେ ନ୍, ର ଇତ୍ୟାଦି ପ୍ରଭେଦ ଥାଏ । ଯାହାକି ଗ୍ରହଣୀୟ ଯଥା—କ'ଣ, କାଣା, କସ (ମାନେରୁ ମାନେର) ।

## VIVA VOCE TEST

25

| ଓଡ଼ିଆ | | ମୁଣ୍ଡାରୀ |
|---|---|---|
| ୧ । | ନମସ୍ତେ | — ଜଆର |
| ୨ । | ଆସ | — ହିଜୁଃମେ |
| ୩ । | ବସ | — ଦୁବ୍‌ମେ |
| ୪ । | ତୁମ ନାମ କ'ଣ | — ଆମଂ ନୁତୁମ୍ କାନାଃ |
| ୫ । | ତୁମର ପିଲାଛୁଆ କେତେ | — ଆମାଃ ହନ୍ ଗାଣା ଟମିନାଂ |
| ୬ । | ତୁମେ କ'ଣ କରୁଛ | — ଆମ କାନାଃମ୍ ଚେକା ତାନା |
| ୭ । | ରୋଗ ହେଲେ ଔଷଧ ଖାଇବ | — ଆଜାର ଯାନ୍‌ରେ ରାନୁଜ ମେପେ |
| ୮ । | ପିଲାଙ୍କୁ ସ୍କୁଲକୁ ପଠାଅ | — ହନକକେ ସ୍କୁଲ କୁଲକପେ |
| ୯ । | ପାଠ ପଢିଲେ ଭଲ | — ଅଲ୍ ଇତୁ କେରେ ବୁଗିୟା |
| ୧୦ । | ସୋସାଇଟିରୁ ଋଣ ଆଣିବା ଭଲ | — ସୋସାଇଟି ତେୟା ରେଣି ଆଉଗେ ବୁଗିୟା |
| ୧୧ । | ମେଟ୍ରିକ ମାପ ଓଜନରେ ବଦଳ | — ମେଟ୍ରିକ ତୁଲତେ ତୁଲ୍‌କାତେ ଆଁକ୍ରୁଗେପେ |

| | | | |
|---|---|---|---|
| ୧୨ । | ତୁମେ ଜମିବାଡ଼ି କାହାକୁ ବନ୍ଧା ଦେଇଛନ୍ତକ ? | — | ଆମ ଅକଏନକ ଅତେ ହାସା ବନ୍ଧାମ୍ ଅମାକ୍ନାଦ୍ କଆଃଚ ? |
| ୧୩ । | ତୁମ ଗାଁରେ କେହି ଗୋତି ଅଛନ୍ତିକ ? | — | ଆପେ ହାତୁରେ ଅକଏ ଧାଙ୍ଗ ମେନାଃକଆ |
| ୧୪ । | ସାହୁକାର ପାଖରେ ଗୋତି ରହିବା ଖରାପ | — | ମହାଜନ ଠାଃରେ ଧାଙ୍ଗ ତାମ୍ବଃ କା ବୁଗିୟା |
| ୧୫ । | ସାହୁକାର ଠାରୁ ଋଣ ଆଣିବା ଦରକାର ନାହିଁ | — | ମାହାଜନଠାଃ ତେୟାଃ ରେଣି ଆଉରେୟା ଦରକାର ବାନଃ |
| ୧୬ । | ପରିଶ୍ରମ କଲେ ଫଳ ମିଳେ | — | ଖାଟା ଅକ୍ଟେରେ ଫଳ ନାମଃଗେୟା |
| ୧୭ । | ମଦ ଖାଇବ ନାହିଁ | — | ଆରକ ଆଲପେ ନୁଇଁୟା |
| ୧୮ । | ବେଶୀ ଝୁଆ ଭଲ ନୁହେଁ | — | ଯାଦ୍କା ହନ୍ କା ବୁଗିୟା |
| ୧୯ । | ଏଥର କି ଫସଲ ହୋଇଛି | — | ନେସକାନ୍ କାନ୍ କରଁ ହଇୟା କାନା |
| ୨୦ । | ତୁମ ଜମି ନାହିଁକି | — | ଆପେୟା ଅତେ କାନାଃ ବାନ୍ଃ |
| ୨୧ । | ସରକାର ଜମି ଦେଉଛନ୍ତି | — | ସରକାର ଅତେଃ ଅମ୍ୟାଦା |
| ୨୨ । | ତୁମ ଗାଁରେ ଗରିବ ଲୋକ କଏ ଅଛି | — | ଆପେ ହାତୁରେ ରେଙ୍ଗେହଲ ଅକଏ ମେନାକଆ |
| ୨୩ । | ସରକାର ବୁଢ଼ା ଲୋକଙ୍କୁ ଭତ୍ତା ଦେବେ | — | ସରକାର ହାଲମ୍ ହଲକକେ ଟାକାଏଃ ଅମାକଆ |
| ୨୪ । | ସରକାର ତୁମର ସୁବିଧା କରୁଛନ୍ତି | — | ସରକାର ଆପେ ନାଗିନ ସୁବିଧା ଯାଦାଏ |
| ୨୫ । | ସେ ଲୋକକୁ ମୁଁ ଜାଣିଛି | — | ଏନ୍ ହଲକେ ଆଙ୍ଗି ଙ୍କ ଚିନାଉୟା |
| ୨୬ । | ତା ନାମ କଣ | — | ଆୟାଃ ନୁତୁମ୍ କଟିଆ |
| ୨୭ । | ବହିପତ୍ର ମାଗଣା ମିଳିବ | — | ବହି ପତର ଏପଏଃତେ ନାମଆ |
| ୨୮ । | ମାଷ୍ଟର ତୁମକୁ ସାହାଯ୍ୟ କରିବେ | — | ମାଷ୍ଟର ଆପେକେଃ ସାହାଯ୍ୟ ଚେୟା |
| ୨୯ । | ଘର ତିଆରି ପାଇଁ ସାହାଯ୍ୟ ମିଳିବ | — | ଆଲଃ ବାଇ ନାଗିନ୍ ସାହାଯ୍ୟ ନାମଆ |
| ୩୦ । | ନିଜ ଭାଷାକୁ ଭୁଲି ଯାଅନାହିଁ | — | ଆପ୍‌ନାରିଃ ଜାଗାର୍‌ଦ୍ ଆଲପେ ରିଳାଂୟା |

# ଆଦିବାସୀ ମୁଣ୍ଡାରୀ ଭାଷା ଶିକ୍ଷା

ଶ୍ରୀ ସନାତନ ମୁଣ୍ଡା, ଏମ୍. ଏ.

| ଓଡ଼ିଆ | ମୁଣ୍ଡାରୀ |
|---|---|
| ମୁଁ ଯାଏଁ | ଆଞ୍ଜି ଞ୍ଜ ସେନଃ |
| ମୁଁ ଯାଉଛି | ଆଞ୍ଜି ଞ୍ଜ ସେନଃତାନା |
| ମୁଁ ଯାଇଛି | ଆଞ୍ଜ ଞ୍ଜ ସେନାକାନା |
| ମୁଁ ଯାଇଥିଲି | ଆଞ୍ଜ ଞ୍ଜ ସେନ୍‌କେନା |
| ମୁଁ ଗଲି | ଆଞ୍ଜି ଞ୍ଜ ସେନଃଯାନା |
| ମୁଁ ଯାଉଥିଲି | ଆଞ୍ଜି ଞ୍ଜ ସେନଃତାନ୍ ତାଇକେନା |
| ମୁଁ ଯିବି | ଆଞ୍ଜି ଞ୍ଜ ସେନଆ |
| ମୁଁ ଯାଉଥିବି | ଆଞ୍ଜି ଞ୍ଜ ସେନ୍‌ତାଃ |
| ମୁଁ ଯାଇଥିବି | ଆଞ୍ଜି ଞ୍ଜ ସେନାକାନା ତଣାଂ |
| ମୁଁ ଯାଇଥାନ୍ତି | ଆଞ୍ଜି ଞ୍ଜ ସେନଃଯାନା ହନାଂ |
| ଆମେ ଦୁହେଁ ଯାଉ | ଆଲଂଲଂ ସେନଃ |
| ଆମେ ଦୁହେଁ ଯାଉଛୁ | ଆଲଂଲଂ ସେନଃତାନା |
| ଆମେ ଦୁହେଁ ଗଲୁ | ଆଲଂଲଂ ସେନଃଯାନା |
| ଆମେ ଦୁହେଁ ଯାଇଥିଲୁ | ଆଲଂଲଂ ସେନ୍‌କେନା |
| ଆମେ ଦୁହେଁ ଯାଉଥିଲୁ | ଆଲଂଲଂ ସେନ୍‌ତାନ୍ ତାଇକେନା |
| ଆମେ ଦୁହେଁ ଯିବୁ | ଆଲଂଲଂ ସେନଆ |
| ଆମେ ଦୁହେଁ ଯାଇଥିବୁ | ଆଲଂଲଂ ସେନାକାନା ତଣାଂ |
| ଆମେ ଦୁହେଁ ଯାଉଥିବୁ | ଆଲଂଲଂ ସେନ୍‌ତାଃ |
| ଆମେ ଦୁହେଁ ଯାଇଥାନ୍ତୁ | ଆଲଂଲଂ ସେନଃଯାନା ହନାଂ |

| ଓଡ଼ିଆ | ମୁଣ୍ଡାରି |
|---|---|
| ଆମ୍ଭେମାନେ ଯାଉ | ଆଲେଲେ ସେନଃ |
| ଆମ୍ଭେମାନେ ଯାଉଛୁ | ଆଲେଲେ ସେନଃତାନା |
| ଆମ୍ଭେମାନେ ଯାଇଛୁ | ଆଲେଲେ ସେନାକାନା |
| ଆମ୍ଭେମାନେ ଯାଇଆସୁଅଛୁ | ଆଲେଲେ ସେନ୍ ଆଉତାନା |
| ଆମ୍ଭେମାନେ ଗଲୁ | ଆଲେଲେ ସେନଃ ଯାନା |
| ଆମ୍ଭେମାନେ ଯାଇଥିଲୁ | ଆଲେଲେ ସେନ୍କେନା |
| ଆମ୍ଭେମାନେ ଯାଇ ଆସୁଥିଲୁ | ଆଲେଲେ ସେନ ଆଉତାନ ତାଇକେନା |
| ଆମ୍ଭେମାନେ ଯାଉଥିଲୁ | ଆଲେଲେ ସେନ୍ତାନ୍ ତାଇକେନା |
| ଆମ୍ଭେମାନେ ଯିବୁ | ଆଲେଲେ ସେନଆ |
| ଆମ୍ଭେମାନେ ଯାଇଥିବୁ | ଆଲେଲେ ସେନାକାନା ତବଙ୍ |
| ଆମ୍ଭେମାନେ ଯାଉଥିବୁ | ଆଲେଲେ ସେନ୍ତାଃ |
| ଅମ୍ଭେମାନେ ଯାଇ ଆସୁଥିବୁ | ଆଲେଲେ ସେନ୍ ଆଉଆ କାନଆ |
| ଆମ୍ଭେମାନେ ଯାଇଥାନ୍ତୁ | ଆଲେଲେ ସେନଃଯାନା ହନାଂ |
| ତୁ ଯାଅ | ଆମ୍ ସେନଃମେ |
| ତୁ ଯାଉଛୁ | ଆମେମ୍ ସେନଃ ତାନା |
| ତୁ ଯାଇଛୁ | ଆମେମ୍ ସେନାକାନା |
| ତୁ ଯାଇ ଆସୁଅଛୁ | ଆମେମ୍ ସେନ୍ ଆଉତାନା (ସେନ୍) |
| ତୁ ଗଲୁ | ଆମେମ୍ ସେନଃଯାନା |
| ତୁ ଯାଉଥିଲୁ | ଆମେମ୍ ସେନଃତାନ୍ ତାଇକେନା |
| ତୁ ଯାଇଥିଲୁ | ଆମେମ୍ ସେନକେନା |
| ତୁ ଯାଇ ଆସୁଥିଲୁ | ଆମେମ୍ ସେନ୍ ଆଉତାନ୍ ତାଇକେନା |
| ତୁ ଯିବୁ | ଆମେମ୍ ସେନଆ |
| ତୁ ଯାଉଥିବୁ | ଆମେମ୍ ସେନ୍ତାଃ |
| ତୁ ଯାଇଥିବୁ | ଆମେମ୍ ସେନା କାନଆ |
| ତୁ ଯାଇ ଆସୁଥିବୁ | ଆମେମ୍ ସେନ ଆଉଆ କାନଆ |

| ଓଡ଼ିଆ | ମୁଣ୍ଡାରୀ |
|---|---|
| ତୁ ଯାଇଥାନ୍ତୁ | ଆମେମ୍ ସେନଃଯାନା ହନାଂ |
| ତୁମେ ଯାଅ | ଆମ୍ ସେନଃମେ |
| ତୁମେ ଯାଉଛ | ଆମେମ୍ ସେନଃ ତାନା |
| ତୁମେ ଯାଇଛ | ଆମେମ୍ ସେନାକାନା |
| ତୁମେ ଯାଇ ଆସୁଅଛ | ଆମେମ୍ ସେନ୍ ଆଉତାନା |
| ତୁମେ ଗଲ | ଆମେମ୍ ସେନଃଯାନା |
| ତୁମେ ଯାଉଥିଲ | ଆମେମ୍ ସେନଃତାନ୍ ତାଇକେନା |
| ତୁମେ ଯାଇଥିଲ | ଆମେମ୍ ସେନ କେନା |
| ତୁମେ ଯାଇ ଆସୁଥିଲ | ଆମେମ୍ ସେନ୍ ଆଉତାନ ତାଇକେନା |
| ତୁମେ ଯିବ | ଆମେମ୍ ସେନଆ |
| ତୁମେ ଯାଉଥିବ | ଆମେମ୍ ସେନ୍ ତା |
| ତୁମେ ଯାଇଥିବ | ଆମେମ୍ ସେନା କାନଆ |
| ତୁମେ ଯାଇ ଆସୁଥିବ | ଆମେମ୍ ସେନ୍ ଆଉଆ କାନଆ |
| ତୁମେ ଯାଇଥାନ୍ତ | ଆମେମ୍ ସେନଃଯାନା ହନାଂ |
| ତୁମେମାନେ ଯାଅ | ଆପେ ସେନଃପେ |
| ତୁମେମାନେ ଯାଉଛ | ଆପେପେ ସେନଃ ତାନା |
| ତୁମେମାନେ ଯାଇଛ | ଆପେପେ ସେନାକାନା |
| ତୁମେମାନେ ଯାଇ ଆସୁଅଛ | ଆପେପେ ସେନ ଆଉତାନା |
| ତୁମେମାନେ ଗଲ | ଆପେପେ ସେନଃଯାନା |
| ତୁମ୍ଭେମାନେ ଯାଉଥିଲ | ଆପେପେ ସେନଃତାନ୍ ତାଇକେନା |
| ତୁମ୍ଭେମାନେ ଯାଇଥିଲ | ଆପେପେ ସେନ୍କେନା |
| ତୁମ୍ଭେମାନେ ଯାଇ ଆସୁଥିଲ | ଆପେପେ ସେନ୍ ଆଉତାନ୍ ତାଇକେନା |
| ତୁମ୍ଭେମାନେ ଯାଇଥିଲ | ଆପେପେ ସେନ୍କେନା |
| ତୁମ୍ଭେମାନେ ଯାଇ ଆସୁଥିଲ | ଆପେପେ ସେନ୍ ଆଉତାନ୍ ତାଇକେନା |
| ତୁମ୍ଭେମାନେ ଯିବ | ଆପେପେ ସେନଆ |

| ଓଡ଼ିଆ | ମୁଣ୍ଡାରୀ |
| --- | --- |
| ତୁମ୍ଭେମାନେ ଯାଉଥିବ | ଆପେପେ ସେନ୍ତାଃ |
| ତୁମ୍ଭେମାନେ ଯାଇଥିବ | ଆପେପେ ସେନାକାନଆ |
| ତୁମ୍ଭେମାନେ ଯାଇ ଆସୁଥିବ | ଆପେପେ ସେନ୍ ଆଉଆ କାନଆ |
| ତୁମ୍ଭେମାନେ ଯାଇଥାନ୍ତ | ଆପେପେ ସେନଃ ଯାନା ହନାଂ |
| ସେ ଯାଏ | ଆୟୁଃ ସେନଃ |
| ସେ ଯାଉଛି | ଆୟୁଃ ସେନଃତାନା |
| ସେ ଯାଇଅଛି | ଆୟୁଃ ସେନାକାନା |
| ସେ ଯାଇ ଆସୁଅଛି | ଆୟୁଃ ସେନ୍ ଆଉତାନା |
| ସେ ଗଲା | ଆୟୁଃ ସେନଃ ଯାନା |
| ସେ ଯାଉଥିଲା | ଆୟୁଃ ସେନଃ ତାନ୍ ତାଇକେନା |
| ସେ ଯାଇଥିଲା | ଆୟୁଃ ସେନ୍କେନା |
| ସେ ଯାଇ ଆସୁଥିଲା | ଆୟୁଃ ସେନ୍ ଆଉତାନ୍ ତାଇକେନା |
| ସେ ଯିବ | ଆୟୁଃ ସେନା |
| ସେ ଯାଉଥିବ | ଆୟୁଃ ସେନ୍ ତାଃ |
| ସେ ଯାଇଥିବ | ଆୟୁଃ ସେନା କାନଆ |
| ସେ ଯାଇଆସୁଥିବ | ଆୟୁଃ ସେନ୍ ଆଉଆ କାନଆ |
| ସେ ଯାଇଥାନ୍ତା | ଆୟୁଃ ସେନ୍ ଯାନା ହନାଂ |
| ସେ ଦୁହେଁ ଯାଆନ୍ତି | ଆକନ୍ କନ୍ ସେନଃ |
| ସେ ଦୁହେଁ ଯାଉଛନ୍ତି | ଆକନ୍ କନ୍ ସେନଃତାନା |
| ସେ ଦୁହେଁ ଯାଇଅଛନ୍ତି | ଆକନ୍ କନ୍ ସେନାକାନା |
| ସେ ଦୁହେଁ ଯାଇଆସୁଛନ୍ତି | ଆକନ୍ କନ୍ ସେନ୍ ଆଉତାନା |
| ସେ ଦୁହେଁ ଗଲେ | ଆକନ୍ କନ୍ ସେନଃଯାନା |
| ସେ ଦୁହେଁ ଯାଉଥିଲେ | ଆକନ୍ କନ୍ ସେନଃତାନ୍ ତାଇକେନା |
| ସେ ଦୁହେଁ ଯାଇଥିଲେ | ଆକନ୍ କନ୍ ସେନ୍କେନା |
| ସେ ଦୁହେଁ ଯାଇ ଆସୁଥିଲେ | ଆକନ୍ କନ୍ ସେନ୍ ଆଉତାନ୍ ତାଇକେନା |

| ଓଡ଼ିଆ | ମୁଣ୍ଡାରୀ |
|---|---|
| ସେ ଦୁହେଁ ଯିବେ | ଆକନ୍ କନ୍ ସେନଆ |
| ସେ ଦୁହେଁ ଯାଉଥିବେ | ଆକନ୍ କନ୍ ସେନ୍ ଛାଃ |
| ସେ ଦୁହେଁ ଯାଇଥିବେ | ଆକନ୍ କନ୍ ସେନାକାନଆ |
| ସେ ଦୁହେଁ ଯାଇ ଆସୁଥିବେ | ଆକନ୍ କନ୍ ସେନ୍ ଆଉଆ କାନଆ |
| ସେ ଦୁହେଁ ଯାଆନ୍ତେ | ଆକନ୍ କନ୍ ସେନଆ ହନାଂ |
| ସେମାନେ ଯାଆନ୍ତି | ଆକକ ସେନଃ |
| ସେମାନେ ଯାଉଛନ୍ତି | ଆକକ ସେନଃ ଚାନା |
| ସେମାନେ ଯାଇଛନ୍ତି | ଆକକ ସେନାକାନା |
| ସେମାନେ ଯାଇଆସୁଛନ୍ତି | ଆକକ ସେନ ଆଉଚାନା |
| ସେମାନେ ଗଲେ | ଆକକ ସେନଃଯାନା |
| ସେମାନେ ଯାଉଥିଲେ | ଆକକ ସେନଃ ଚାନ୍ ଛାଇକେନା |
| ସେମାନେ ଯାଇଥିଲେ | ଆକକ ସେନ୍ କେନା |
| ସେମାନେ ଯିବେ | ଆକକ ସେନଆ |
| ସେମାନେ ଯାଇଥିବେ | ଆକକ ସେନା କାନଆ |
| ସେମାନେ ଯାଉଥିବେ | ଆକକ ସେନ୍ ଛାଃ |
| ସେମାନେ ଯାଇ ଆସୁଥିବେ | ଆକକ ସେନ୍ ଆଉଆ କାନଆ |
| ସେମାନେ ଯାଇଥାନ୍ତେ | ଆକକ ସେନଆ ହନାଂ |
| ତୁ ଯାଆ | ଆମ୍ ସେନଃ ମେ |
| ତୁମେ ଦୁହେଁ ଯାଅ | ଆବେନ୍ ସେନଃବେନ୍ |
| ତୁମ୍ଭେମାନେ ଯାଅ | ଆପେ ସେନଃ ପେ |
| ସେ ଯାଉ | ଆୟେଃ ସେନଃକା |
| ସେ ଦୁହେଁ ଯାଆନ୍ତୁ | ଆକନ୍ କନ୍ ସେନଃକା |
| ସେମାନେ ଯାଆନ୍ତୁ | ଆକକ ସେନଃ କା |

| ଓଡ଼ିଆ | ମୁଣ୍ଡାରୀ | ଓଡ଼ିଆ | ମୁଣ୍ଡାରୀ |
|---|---|---|---|
| ମୁଣ୍ଡ | ବଅ | ଆଖି | ମେଦ୍ |
| ଦେହ | ହଲ୍ମ | ଛାତି | ମଗ୍ |
| କାନ | ଲୁତୁର୍ | ନାକ | ମୁଁ |
| ଦାନ୍ତ | ଡାଟା | ଜିଭ | ଆଲାଂ |
| ବେକ | ହଟଃ | କାନ୍ଧ | ତାର୍ଦ୍ |
| ପିଠି | ଦେୟା | ଛାତି | କୁଜାମ |
| ହାତ | ତିଇ | ପେଟ | ଲାଇଃ |
| ଗୋଡ | କାଟା | ଆଙ୍ଗୁଠି | ଡାଡ଼ |
| ନଖ | ସାର୍ ସାର୍ | ଅଣ୍ଟା | ମାୟାଂ |
| ପିଣ୍ଡ | ପେନ୍ଦା | ଆଣ୍ଠୁ | ମୁକୁଲ |
| ପାଦ | କାଟାଚୁମ୍ପା | ଗୋଇଠି | ଭଟି |
| ବାପ | ଆବା | ମା | ମାଁ |
| ପୁଅ | ହନ୍କଳା | ଝିଅ | ହନ୍କୁଳ |
| ଭାଇ | ହାଗା | ଜ୍ୟେଷ୍ଠଭାଇ | ହୁଡ଼ିଂହାଗା |
| ଭଉଣୀ | ମିଶି | ବୋହୂ, ଭାଉଜ | ବୁ |
| ଦାଦ | କୁକୁ | ଖୁଡ଼ି | କୁକୁମା |
| ମାମୁଁ | ମାମୁଁ | ଶଳା | ସାଲ୍କଳା |
| ସ୍ୱାମୀ | କଷାନ୍ତେ | ସ୍ତ୍ରୀ | କୁଳି |
| ଶ୍ୱଶୁର | ହଞ୍ଜାର୍ | ଶାଶୁ | ହାନାର |
| ସମ୍ବନ୍ଧ | ସୁମ୍ବନ୍ଧ | ନାତି | ଜାଇକଳା |
| ବନ୍ଧୁ | ବନ୍ଧୁ | କନ୍ୟା | କନେୟାଁ |
| ଘରଯୋଇଆଁ | ଘରଜାମାଇଁ | ଭଣଜା | ଭାଗିନା |
| ଭାଣିଜ | ଭଗିନ | ବିବାହ | ଆଣ୍ଦି |
| କଥା | ଜାଗାର୍ | ଗୀତ | ସେନ୍ |
| ଶୋଇବା | ଗିତିଃ | ସପନ | କୁମୁ |
| ଡାକ | ଗୁଆ | ବଡ଼ ଛାତି | କାକାଲ |
| ଭେକ | ରେଙ୍ଗେଃ | ଶୋଷ | ତେତାଂ |

| ଓଡ଼ିଆ | ମୁଣ୍ଡାରୀ | ଓଡ଼ିଆ | ମୁଣ୍ଡାରୀ |
|---|---|---|---|
| ନଦ | ଦୁଲୁମ୍ | ଖାଦ୍ୟ | ଜମେୟାଁଃ |
| ଘାମୟୁ | ଲୁୟାଃ | କାର୍ଯ୍ୟ | କାମି |
| ଟଙ୍କା | ପେଟେଳ୍ଃ | ଚୂର୍ଣ୍ଣ | ଦେରେଲ୍ଃ |
| ଶେଷ | ଚୁବା | ଉଠା | ବିରିଦ୍ |
| ବସା | ଦୁବ | ଦୌଡ଼ | ଧାଉଲ୍ |
| ଡିଆଁ | ଖୁଡ଼ିଲ | କ୍ଳାନ୍ତ | ଲାଗା |
| ହସ | ଲନ୍ଦା | କାନ୍ଦ | ଇୟାମ୍ |
| ଭଲ | ବୁଗି | ସୁଖ | ରସିକା |
| ମନ୍ଦ | ଯୁଦା | ଦୁଃଖ | ଦୁକୁ |
| ଡର | ବର | ଲଜ | ଗିୟୁଃ |
| ସ୍ନେହ, ପ୍ରେମ | ଦୁଲଳ୍, ସହଗା | କ୍ରୋଧ | ଖିସ୍ |
| ଭୁଲ | ଅଣା | ଦାନ | ଦାନ୍ |
| ଦକ୍ଷିଣା | ଦକ୍ଷିଣା | ହଜିବା | ଆଦ୍ |
| ଗର୍ଭ | ଚଲ୍‌ବଲଅ | ଜନ୍ମ | କାଟାଅ |
| ରୋଗ | ଆଜାର୍ | ଭସ୍ମ | ବର |
| ଘରଜୟୁ | ହରାଅ | ଘର | ଅଳାଃ |
| ପାହାଚ | ପାହାଚ | ପିଣ୍ଡା | ପିଣ୍ଡିଗି |
| ତଳ | ଲତାର | କାନ୍ଥ | କାନ୍ତ୍ |
| ଗୃହ | ଗୃହାଏ | ଛଣ | ଭୁଣ୍ଡି |
| ଝରକା | ଝୁରଲିଂ | ଦୁଆର | ଦୁଆର୍ |
| ଗୁହାଳ | ଗଣା | କୂଅ | ଡାଡ଼ି |
| ମାଟି | ହାସା | କାଦୁଅ | ଲସଦ୍ |
| ବାଲି | ଗିଡ଼ିଲ୍ | ଚୂନ | ଚୂନ୍ |
| ଖୁଣ୍ଟ | ଖୁଣ୍ଟା | ନିଆଁ | ସେଙ୍ଗେଲ |
| ପାଣି | ଦାଆ | କାଠ | ସାନ୍ |
| ଚୁଲି | ଜନ୍ଥୁଲ | ପାଉଁଶ | ତରଏଃ |
| ଧୂଆଁ | ସୁକୁଲ୍ | ଅଙ୍ଗାର | ଆଙ୍ଗ୍ରା |

| ଓଡ଼ିଆ | ମୁଣ୍ଡାରୀ | ଓଡ଼ିଆ | ମୁଣ୍ଡାରୀ |
|---|---|---|---|
| ହାଣ୍ଡି | ଗ୍ରଣ୍ଡି | ଡାଙ୍କୁଣି | ଡାବ୍ଘମ |
| ଲଉଡ଼ୁମ୍ବା | ଲଉଡୁମ୍ବା | ବୋତଲ | ବତଲ୍ |
| ଘଡ଼ି | ଘଳି | ଗିଲସ୍ | ଗିଲସ୍ |
| ଟାଟିଆ | ଗିନା | କଂସା | କାଂସା |
| ଡେଙ୍କ୍ଟ | ଡବ୍ଟ | ଥାଳି | ଥାଳି |
| କଟରେଇ | କଡ଼୍ମ | ଗରା | ଘାଗାରା |
| ପନଖି | କାତୁ | ଗୁଆକାତି | ଗୁଆକାତି |
| ଚଟୁ | କାର୍ଟୁଲି | ଶିଳ | ଗୁଲ୍ଗି ଧିରି |
| ଚକି | ଗୃକା ଧିରି | କୁଲ | ହାଟ୍ାଃ |
| ଅଇଲା | ଜବରାଃ | ଗୁଞ୍ଜୁଣି | ଜନ୍ଃ |
| ଟୋକେଇ | କାନ୍ଟି | ଶିକା | ଶିକୁଆର୍ |
| ହାର | ମାଲି | ବାକସ | ବାକସ୍ |
| ଅଖା | ବସ୍ତା | ମୁଣି | ଥୁଇଲାଃ |
| ଖଟ | ପାରକମ୍ | ଶେଯ | ବଚ୍ଛନା |
| ଟେକିଆ | କଟଣେ | ମଶିଣା | ମଶିଣା |
| କରେସିନତେଲ | ହାର୍ କନ୍ ସୁନୁମ୍ | ବତି | ବାତି |
| ଦପାଳି | ଦିଆ | ପଙ୍ଖା | ପାଙ୍ଖା |
| କଣ୍ଟା | ଜାନୁମ୍ | ଟିଣ | ଟିଣ୍ |
| ଲୁହା | ମେଣେଦ୍ | ଖୁର | ହାଲାଦ୍ |
| ଛୁଞ୍ଚି | ସୁଇ | ଦିଆସିଲି | ଦିଆସିଲ୍ |
| | | ଦିଆସିଲି କାଠି | ଦିଆସିଲ୍ କାଠ |
| ସମ୍ପତ୍ତି | ସମ୍ପତି | ପଇସା | ପଏସା |
| ଟଙ୍କା | ଟାକା | ମାଣ୍ଡିଆ ଭାତ | ମାଣ୍ଡିଆ ମାଣ୍ଡି |
| ମାଣ୍ଡିଆ ପାଉ | ମାଣ୍ଡିଆ ଲେଟେ | ତରକାରି | ଉତୁ |
| ଲୁଣ | ବୁଲୁଂ | ତେଲ | ସୁନୁମ୍ |
| ଦୁଧ | ତୁଆ | ମହୁ | ମୁଁ ସୁନୁମ୍, ମହୁ |
| ଔଷଧ | କର୍ସି | ଫଳ | ଜଅ |

| ଓଡ଼ିଆ | ମୁଣ୍ଡାରୀ | ଓଡ଼ିଆ | ମୁଣ୍ଡାରୀ |
|---|---|---|---|
| ମାଂସ | ଜିଲୁ | ସାପ | ବିଂ |
| ମାଙ୍କଡ଼ | ଗାଳ | ପିଠା | ପିଠା |
| ଖଟା | ଜଜ | ପିତା | ମେର୍ |
| ବଗ | ହାଳାଦ୍ | ଲୁଣିଆ | ବୁଲୁଂ |
| ପିଙ୍କା | ପିକା | ଧୂଆଁପତ୍ର | ତାମ୍ବାକୁ |
| ଗଞ୍ଜେଇ | ଗାଞ୍ଜା | ଅଫିମ | ଅଫିମ |
| ମଦ | ଆର୍କ | ମହୁଲ ମଦ | ମାଦୁକାମ୍ ଆର୍କ |
| ଖଜୁରି ମଦ | ଖିଜୁର୍ ଆର୍କ | ରନ୍ଧା ମଦ | ତିକ ଆର୍କ |
| ଦୋକାନ ମଦ | ଦକାନ୍ ଆର୍କ | ପିନ୍ଧାଲୁଗା | ଧଡି କଚରଃ |
| କନା | ତେଙ୍ଗାଃ | ଟଗଡ଼ | ଦାହାଳ |
| ଛତା | ଗୃତମ୍ | ଟୋପି | ଟପି |
| ମାଳି | ବାଆଁ ଗୁଡୁନଃ | ଫୁଲହାର | ବାଆ ମାଲ |
| ମୁଦି | ପଲ | ନାକର ମୁଦି | ଲୁଲୁକ୍ |
| ହାତର ମୁଦି | ତିଇରେୟାଃ ପଲ | ହାତର ଖଡୁ | ସାକମ୍ |
| ଧାନ | ବାବା | ଚାଉଳ | ଚାଉଲି |
| ସରୁ ଚାଉଳ | ନାନା ଚାଉଲି | ମାଣ୍ଡିଆ | ମାଣ୍ଡିଆ |
| ବର | ବାମ୍ବାଳା | ମୁଗ | ମୁଗି |
| ହରଡ଼ | ରାହାଳ | ମସୁର | ମାସୁର |
| ଆଖୁ | ଆଖୁ | ହଳଦୀ | ସାସାଂ |
| ଲଙ୍କାମରିଚ | ବାବା ମୁର୍ଚ | ପିଆଜ | ପେଆଜ |
| ରସୁଣ | ରାସୁଣ | ମକା | ଜଣ୍ଡ୍ରା |
| ସୋରିଷ | ମାନ | ଝୁଡ଼ଙ୍ଗ | ଘାଙ୍ଗାରା |
| ଶିମ୍ବ | ମାନାଲ୍ | ଜମି | ଅଟେ, ବାଦ |
| ବିଲ | ଆଳ | ମାଟି | ହାସା |
| ବାଲି | ଗିତିଲ୍ | ଖତ | ସାରା |
| ଉଠାଣି | ଢୁଦ୍ | ଟେକା ମାରିବା | ଥେର୍ |
| ପଥର | ଧିରି | ପର୍ବତ | ବୁରୁ |

| ଓଡ଼ିଆ | ମୁଣ୍ଡାରି | ଓଡ଼ିଆ | ମୁଣ୍ଡାରି |
|---|---|---|---|
| ନଣ୍ଡା | ଗାଡ଼ା | ପାଣି | ଦାଆ |
| ଦ୍ୱିତ | ଗୃଷ୍ଟ୍ | ହଳକାମ | ସିୟୁଃ କାମି |
| ଲଙ୍ଗଳ | ନାଇଲ୍ | ମଞ୍ଚ | ଆଳଗମ୍ |
| ଦା | ଦାଭ୍ରମ୍ | କୋଡ଼ି | କଦ୍‌ଲମ୍ |
| ଶାବଳ | ଶାବଳ | ଗଦା | ଗାଦା |
| ଧାନଗଛ | ବାବାଦାରୁ | ପାଳ | ଭୁଣ୍ଡି |
| ଡାଳଗଦା | ଭୁଣ୍ଡି ଗାଦା | ଖଳା | କଲମ୍ |
| ଘାଡ଼ି | ମାଣମ୍ | ଗଛ | ଦାରୁ |
| ଲଟା | ଲଟା | ଘାସ | ଛାସାଦ୍ |
| ବାଉଁଶ | ମାଦ୍ | ପତ୍ର | ସାକାମ୍ |
| ଡାଳ | ଧାନା | ଚେର | ରେଦ୍ |
| ମୂଳ | ଗୁଟା | କଡ଼ | ଖଣ୍ଡ |
| ଫୁଲ | ବାଆ | ମଞ୍ଜୀ | ଜାଂ |
| ଗ୍ଳୁଲ | ବାକାଲ୍ଃ | ଗଜା | ଗଜା |
| ରସ | ସିଟସେ | କାଠ | ସାନ୍ |
| ଶାଗ | ଆଳାଃ | କଞ୍ଚା | ବେରେଲ୍ |
| ଶୁଖିଲା | ରଲ୍ | ପାଚିଲା | ଇସିନ୍ |
| ସଡ଼ା | ସିଯୁ | ଆମ୍ବ | ଉଲି |
| ଆମ୍ବ କଷି | ଉଲି ଚମ୍‌ଚାଃ | ପଣସ | କାଣ୍ଟାଳ୍ |
| କମଳା | ଜାମ୍ବିରି | ଜାମୁ | କୁଦା |
| ପିଜୁଳି | ସଇତମ୍ | ନଡ଼ିଆ | ନଣିଆଁ |
| କଖାରୁ | କାକାରୁ | ପାଣିକଖାରୁ | ପାଣ୍ଡେସ୍ଥା |
| କାକୁଡ଼ି | ଚାୟୁାର୍ | ବିଲାତି ବାଇଗଣ | ବେଲାତି |
| ବାଇଗଣ | ବେଙ୍ଗାଳ୍ | କଲରା | କାର୍‌ଲା |
| ନମ୍ବ | ନମ୍ | ଟେଣ୍ଟୁଳି | ଜଜ |
| ଆମ୍ବ ଠାକୁଆ | ଉଲି ଠାକୁ | ପକ୍ଷୀ | ଚେଣେ |
| ସାପ | ବିଂ | କୁମ୍ଭୀର | ଛାୟୁାନ୍ |

| ଓଡ଼ିଆ | ମୁଣ୍ଡାରୀ | ଓଡ଼ିଆ | ମୁଣ୍ଡାରୀ |
|---|---|---|---|
| ମାଛ | ହାଇ | କଇଁଛ | ହର୍ |
| ବେଙ୍ଗ | ରକେ | ପୋକ | ତିଜୁ |
| କଙ୍କଡ଼ା | କାକକମ୍ | ଗାଈ | ଗାଈ |
| ବାଛୁରି | ମିଁସୁ | ବଳଦ | ହାଡ଼ା |
| ଷଣ୍ଢ | ଆଣ୍ଡି ଆଉରଃ | ମଇଁଷି | କାଡ଼ା |
| ଛେଳି | ମେରମ୍ | ମେଣ୍ଢା | ମିଡ଼ି |
| ଘୁଷୁରି | ସୁକୁରି | ଗଧ | ଗାଧା |
| ଘୋଡ଼ା | ସାଦମ୍ | ହାତୀ | ହାତୀ |
| କୁକୁର | ସେତା | ବିରାଡ଼ି | ବିଲାଇ, ପୁସି |
| ହରିଣ | ସାଇଲ୍, ଜିଲୁ | ସମ୍ବର | ସିଲବ୍ |
| ବାଘ | ହାଡ଼ଗା, କୁଲା | ଠେକୁଆ | କୁଲାଇ |
| ଭାଲୁ | ବାନା | ବିଲୁଆ | ତୁୟୁ |
| ହସିବା | ଲାଦା | ଜାଣିବା | ଠର୍ |
| ଶୁଣିବା | ଆୟୁମ୍ | କରିବା | କାମି |
| ନ କରିବା | କା କାମି | ନେବା | ଇଦି |
| ପିଇବା | ନୁଁ | ଶୋଇବା | ଗିତିଃ |
| ହାଣିବା | ମାଆ | ଗୁଳିବା | ସେନ୍ |
| ଧରିବା | ସାବ୍ | ଗୁଡ଼ିବା | ଆଲା |
| କହିବା | କାଜି | ରଖିବା | ଦଅ |
| ଲେଖିବା | ଅଲ୍ | କାମୁଡ଼ିବା | ହୁଆଃ |
| ଉଠିବା | ବିଜାବ୍ | ବୁଡ଼ିବା | ଉନୁମ୍ |
| ନାଚିବା | ସୁସୁନ୍ | ହଲିବା | ରୁକୁ |
| ଖାଇବା | ଜମ୍ | ଦେଖିବା | ଲେଲ୍ |
| ଶୁଙ୍ଘିବା | ଜିଇ | ଡରିବା | ବର |
| ବାଗିବା | ବିଗ୍ | କାନ୍ଦିବା | ଇୟାମ୍ |
| ହସିବା | ଲାଦା | ବସିବା | ଦୁବ୍ |
| ଠିଆହେବା | ଥିଙ୍ଗୁନ୍ | ପଢ଼ିବା | ଇପୁଃ, ଗିଡ଼ି । |

| ଓଡ଼ିଆ | ମୁଣ୍ଡାରୀ |
| --- | --- |
| କାଟିବା | ହ୍ୱାଦ୍ |
| ଖୋଲିବା | ଗନ୍ଧା |
| ବାନ୍ଧିବା | ଥଲ୍ |
| ଖେଳିବା | ଇନୁଂ |
| ଦୌଡ଼ିବା | ଧାଉଳ |
| ହଜିବା | ଆଦ୍ |
| ମିଳିବା | ନାମ୍ |
| ବରଗଛ | ବାଟେଦାରୁ |
| ଶାଳଗଛ | ଶାରଜମ୍ ଦାରୁ |
| ଅମୃତଭଣ୍ଡା | ଜାଡ଼ା |
| ତୁ ଟଙ୍କା ପାଇବୁ | ଆମ୍ ଟାକାମ୍ ନାମେୟାଂ |
| ମୋତେ ଜଣା ନାହିଁ | ଆଞ୍ଜ କାଞ୍ଜ ଇଉୁଆନା |
| ବାଘ ଗର୍ଜନ କଲା | କୁଲ୍ଏଃ ଗାର୍ଜାଅ କେଦା |
| ଦରକାର ଅଛି | ଦରକାର ମେନାଃ |
| ମେଘ ବରଷୁଛି | ଗାମାଏଃ ଗାମାଯାଦା |
| ଖରା ହେଉଛି | ଜେଟେ ଯାଦାଏଃ |
| ମୁଁ ଗାଧୋଉଛି | ଆଞ୍ଜିଞ୍ଜ ରେୟୁାଜେନ୍ ତାନା |
| ଖାଦ୍ୟରେ ମାଛି ବସାଅ ନାହିଁ | ଜମେୟାଃ କରେ ରଅ । ଆଲପେ ତୁବ୍ ଇଚକଆ |
| ମଇଳା ପାଣି ପିଅ ନାହିଁ | ଅଁସକର ଦାଆ ଆଲପେ ନୁଉଁୟା |
| ଚନ୍ଦ୍ର ଚନ୍ଦ୍ରରେ ଲୁଗା କୁଣେ | ପେଣାଏଁ ଚାକ୍ଚାଚେ କଚରେଃ ଚେଂୟା |
| ହାଟରେ ହଳଘା ଧୂଆଁପତ୍ର ବଦଳ କରୁଛି | ହାଟ୍ରେ ସାସାଂ ଚାମ୍କୁ ଲେ ବଦଲ୍ ଯାଦା |
| ତମ୍ବି ବିକିବାକୁ ଯାଉଛି | ନମା ଆକିଂଲେ ସେନଃତାନା |
| ମୁଁ ବିକିବା ମୂଲ ଜାଣେ ନାହିଁ | ଆଞ୍ଜ ଆକିଂ ଗନଂ କାଞ୍ଜ ଇଉୁଆନା |
| ଗୀତ ଗାଅ | ଦୁରଂ ଗେପେ |

| ଓଡ଼ିଆ | ମୁଣ୍ଡାରୀ |
|---|---|
| ବାଜା ବଜାଅ | ରୁଇଃ ସେ |
| ବଇଁଶୀ ବଜାଅ | ରୁତୁ ଅରଂଗେପେ |
| କାନ୍ଧରେ ସବୁବେଳେ ଝାଙ୍ଗ | ତରିନ୍‌ରେ ମଦ୍‌ଲେତାକ୍‌ ହାକାଏ ପେ |
| କଜିଆ କରିବା ଭଲ ନୁହେଁ | ଏପେରଂ କା ବୁଟିୟା |
| ଥଣ୍ଡା ହୁଅ, ରାଗ ନାହିଁ | ଥ ମାଅ ନଗଃ ଟୁମ, ଆଲମ୍‌ ରାଆଗଆ |
| ମଶା କାମୁଡ଼ିଲେ ଜ୍ୱର ହୁଏ | ସିକଣ୍‌ଃ ହୁଆଃତେ ହାସୁ ହଜୁଆ |
| ଭାଲୁ ନଖରେ ରମ୍ପୁଡ଼ି ପକାଏ | ବାନୌ ସାର୍‌ ସାର୍‌ ତେଃ ଟାଆଦୁରା |
| ଶୀତ ଦିନେ ବାଘ ମାତେ | ରବାଂ ଦିନ୍‌ କୁଲଏଃ ବୁଲଆ |
| କୁକୁର ଆମ ଘର ଜଗେ | ସେତା ଆଲେ ଅଡାଃଏଃ ହରୟା |
| କନ୍ଧ ଝିଣ୍ଟିଏ କନା ପିନ୍ଧିଛି | କଜି ମସୂଦ୍‌ ଡେଙ୍ଗାଏଃ ଧୁତାଦା |
| ମୁଁ ଲୁଗା ପିନ୍ଧିଛି | ଆଞ୍ଜିଞ୍ଜ ଧୁତନ୍‌ ତାନା |
| ସରକାର ଗୃହ ପାଇଁ ଋଣ ଦେବେ | ସରକାର ଗୃଷ ନାଗିନ୍‌ ଦେଣିଃ ଅଟେମ୍ୟାଁ |
| ନମସ୍ତେ | ଜଆର୍‌ |
| ଆସ | ହଜୁଃମେ |
| ଆସନ୍ତୁ | ହିଜୁଃବେନ୍‌ |
| ବସ | ଦୁବ୍‌ମେ |
| ବସନ୍ତୁ | ଦୁବ୍‌ବେନ୍‌ |
| ତୁମର ନାମ କ'ଣ ? | ଆମାଃ ନୁତୁମ୍‌ କାନାଃ ? |
| ତୁମର ପିଲାଛୁଆ କେତେ ? | ଆମାଃ ହନ୍‌ଗାଣା ଶିମିନାଂ ? |
| ତୁମେ କ'ଣ କରୁଛ ? | ଆମ କାନାଃମ୍‌ ଚେକାତାନା ? |
| ରୋଗ ହେଲେ ଔଷଧ ଖାଇବ | ଆଜାର ଯାନ୍‌ରେ ରାନୁ ଜମେପେ |
| ପିଲାଙ୍କୁ ସ୍କୁଲକୁ ପଠାଅ | ହନ୍‌କକେ ସ୍କୁଲ୍‌ କୁଲକପେ |
| ପାଠ ପଢ଼ିଲେ ଭଲ | ଅଲ୍‌ ଇତୁକେରେ ବୁଗିୟା |

| ଓଡ଼ିଆ | ମୁଣ୍ଡାରି |
| --- | --- |
| ସୋସାଇଟିରୁ ଋଣ ଆଣିବା ଭଲ | ସୋସାଇଟି ତେୟୁଃ ରେଣି ଆଭରେ ବୁଗିୟୁ |
| ମେଟ୍ରିକ ମାପ ଓଜନରେ ବିକବ | ମେଟ୍ରିକ୍ ତୁଲତେ ତୁଲ୍‌କାତେ ଆକ୍ରିଙ୍ଗପେ |
| ତୁମେ ଜମିବାଡ଼ି କାହାକୁ ବନ୍ଧା ଦେଇଛ କି ? | ଆମ ଅକଏକେ ଅତେହାସା ବାନ୍ଧାମ୍ ଅମାକାଦ୍ କଆଚ ? |
| ତୁମ ଗାଁରେ କେଉଁ ଗୋଡ଼ି ଅଛନ୍ତି କି ? | ଆପେ ହାତୁରେ ଅକଏ ଧାଙ୍ଗ ମେନଃ କଆ |
| ସାହୁକାର ପାଖରେ ଗୋତି ରହିବା ଖରାପ | ମହାଜନତାଃରେ ଧାଙ୍ଗି ତାଯୁଃ କା ବୁଗିୟୁ |
| ସାହୁକାରଠାରୁ ଋଣ ଆଣିବା ଦରକାର ନାହିଁ | ମହାଜନତାଃ ତେୟୁଃ ରେଣି ଆଭରେୟୁ ଦରକାର ବାନାଃ |
| ପରିଶ୍ରମ କଲେ ଫଳ ମିଳେ | ଖାଟାଅକ୍ଃରେ ଫଳ ନାମଃ ଗେୟୁ |
| ମଦ ଖାଇବ ନାହିଁ | ଆରକ ଆଲପେ ନୁଉଁୟୁ |
| ବେଶୀ ଜୁଆ ଭଲ ନୁହେଁ | ସାଦ୍‌କା ହନ୍‌କା ବୁଗିୟୁ |
| ଏବେ କି ଫସଲ ହୋଇଛି | ନେସକାନ୍ କାନ୍ କରସି ହଇୟୁ କାନା |
| ତୁମ ଜମି ନାହିଁ କି ? | ଆପେୟୁଃ ଅତେ କାନାଃ ବାନ୍ଃ |
| ସରକାର ଜମି ଦେଉଛନ୍ତି | ସରକାର ଅତେଃ ଅମ୍ ସାଦା |
| ତୁମ ଗାଁରେ ଗରିବ ଲୋକ କିଏ ଅଛି ? | ଆପେ ହାତୁରେ ରେଙ୍ଗେଃହଳ ଅକଏ ମେସାଃକଆ |
| ସରକାର ବୁଢ଼ା ଲୋକଙ୍କୁ ଭତ୍ତା ଦେବେ | ସରକାର ହାଲାମ୍ ହଳକକେ ଟାକାଏଃ ଅମାକଆ |
| ସରକାର ତୁମର ସୁବିଧା କରୁଛନ୍ତି | ସରକାର ଆପେ ନାଗିନ ସୁବିଧା ସାଦାଏ |

## ବସ୍ତର ବଣ୍ଡଗୀୟ ମାଜିଷ୍ଟ୍ରେଟମାନଙ୍କ ପାଇଁ

ଓଡ଼ିଆ

ଯାହା କହୁଛି ସତ କହୁଛି

ଶପଥ କରି କହୁଛି
ମିଛ କହୁ ନାହିଁ
ସେ ଲୋକ ସହିତ ମୋର
ସମ୍ପର୍କ ନାହିଁ
ଯାହା ଦେଖିଛି ତାହା କହୁଛି

ମୁଣ୍ଡାରି

ଅକଆଞ୍ଜ କାଜଯାଦା ସତଞ୍ଜ
କାଜଯାଦା
କରିସ୍ନା କାଟେଞ୍ଜ କାଜଯାଦା
ଇପାଏଃ କାଞ୍ଜ ଜାଗାରଯାଦା
ଏନ୍ ହଲଲଃ ଆଞ୍ଜାଃ ସେତାଃ
ସମ୍ପର୍କ ବାନ୍ଃ
ଅକଆଞ୍ଜ ଲେଲ୍ତାଦା
ଇନାଞ୍ଜ କାଜଯାଦା

## ପୋଲିସ ଅଫିସରମାନଙ୍କ ପାଇଁ

ସେ ଲୋକକୁ ମୁଁ ଜାଣିଛି
ତା ନାମ ବୁଟିଆ
ତା ଘର ଆମ ଘର ପାଖରେ

ସେ ମୃତ ବ୍ୟକ୍ତିକୁ ମୁଁ ଜାଣେ

ସେ କାଲି ଏଠାରେ ଥିଲା
ତା ମୃତଦେହ ସେଠାରେ ଅଛି
ସେ ଗ୍ରେସ କରିଛି
ତାକୁ ଟାଙ୍ଗିରେ ହାଣି ଦେଇଛି
ଗ୍ରେସ ଜନଷ ସେଠାରେ ଅଛି
ଆଗରୁ ସେ ଗ୍ରେସ କରିଛି

ଏନ୍ ହଲକେ ଆଞ୍ଜିଞ୍ଜ ଚନାତସ୍ନା
ଆସ୍ନାଃ ନୁତୁମ୍ ବୁଟିଆ
ଆସ୍ନାଃ ଅଲାଃ ଆଲେଅଲାଃ
ଜାପାଃରେ
ଏନ୍ ଗଏଃ ହଲ ଟାକେ ଆଞ୍ଜିଞ୍ଜ
ଚନାତସ୍ନା
ଆଏଃ ହଲକେଟେଃ ତାଇକେନା
ଆସ୍ନାଃ ଗଏଃ ହଲମ୍ ଏଣ୍ଡେ ମେନାଃ
ଆଏଃ କୁମ୍ବୁଲ୍ତା ଦାଏଃ
ଆଏଃକେ କାପିତେଃ ମାଆ ତସ୍ନା
କୁମ୍ବୁଲ୍ କିନଷ ଏଣ୍ଡେମେନାଃ
ମାଣାଂଟେ ଆସ୍ନେଃ କୁମ୍ବୁଲ୍ତାଦା

## ରାଜସ୍ୱ ବିଭାଗ ଅଫିସରମାନଙ୍କ ପାଇଁ

| ଓଡ଼ିଆ | ମୁଣ୍ଡାରୀ |
| --- | --- |
| ମୋ ଜମି ସେ ନେଇଯାଇଛି | ଅଞ୍ଜାଃ ହାସା ଆପେ୍ୟଃ ଇଦିତାଦା |
| ମୁଁ ତାକୁ ଗୁହାରି କରୁଥିଲି | ଆଁଞ୍ଜ ଇନାଞ୍ଜ ସି ଅର୍ଜିଯାଦ୍ ତାଇକେନା |
| ମୁଁ ଜାତିରେ ଆଦିବାସୀ | ଆଞ୍ଜ ଜାତିରେ ଆଦିବାସୀ |
| ମୋର ଭୂମି ନାହିଁ | ଆଞ୍ଜାଃ ଅତେ ବାନଃ |
| ମୁଁ କାମ କରି ଚଳେ | ଆଞ୍ଜା ନାଲି କା ଚେଞ୍ଜ ଆସୁଲେନ୍ ତାନା |

## ଅବକାରୀ ଅଫିସରମାନଙ୍କ ପାଇଁ

| | |
| --- | --- |
| ମୁଁ ମଦ ତିଆରି କରୁନାହିଁ | ଆଞ୍ଜ ଆରକି କାଞ୍ଜି ବାଇତାନା |
| ମୁଁ ମଦ ଖାଏଁ | ଆଞ୍ଜ ଆରକିଂ ନୁନୁଆ |
| ମଦ ଖାଇବା ଖରାପ | ଆରକି ନୁଁ କା ବୁଗିଅ୍ୟା |
| ସେ ମଦ ତିଆରି କରୁନାହିଁ | ଆଏଃ ଆରକି କାଏଃ ବାଇତାନା |
| ମଦ ଖାଇବି ନାହିଁ | ଆରକି କାଞ୍ଜ ନୁଁୟାଁ |
| ସେ ଗୁହାରି କରି ଚଳୁଛି | ଆଏଃ ଗୁହାରି କା ଚେଃ ଗୁଲିଓେ୍ନ୍ ତାନା |
| ଛେଳି କୁକୁଡ଼ା ପାଳୁଛି | ସିମ୍ ମେରମିଞ୍ଜ ଆସୁଲ୍ତାନା |
| ତାକୁ ବିକିକରି ଚଳୁଛି | ଇନକୁଃ ଆକିରିଂ କାଚେଞ୍ଜ ଆସୁଲେନ ତାନା |
| ସେ ଆମ ଛେଳି ଚୋରି କରିଛି | ଆଏଃ ଆଲେୟାଃ ମେରମେ୍ଃ କୁମ୍ବୁଡ଼ିୟା |
| ଚୋରି କରିବା ପାପ | କୁମ୍ବୁଡ଼ିଦ ପାଆପା |

## ଶିକ୍ଷକମାନଙ୍କ ପାଇଁ

| ଓଡ଼ିଆ | ମୁଣ୍ଡାରୀ |
|---|---|
| ପିଲଙ୍କୁ ସ୍କୁଲକୁ ପଠାଅ | ହନ୍‌କକେ ସ୍କୁଲ୍‌କୁଲ୍‌କପେ |
| ସେମାନେ ପାଠ ପଢ଼ିବେ | ଆକକ ଅ...ନ |
| ପାଠ ପଢ଼ିଲେ ଚାକିରି କରିବେ | ଅ...ଲ କାଡେକ ଗ୍ନକରିୟୁ |
| ନଚେତ୍ ବ୍ୟବସାୟ କମ୍ବା ଚାଷ କରିବେ | କାଦେରଦକ ବେପାରୀ କାରକ ଚାଷ୍ଆଡା |
| ସୋସାଇଟିରୁ ଋଣ ମିଳୁଛି | ସୋସାଇଟି ତେୟୁଃ ରେଣି ନାମଃ ତାନା |
| ବହିପତ୍ର ମାଗଣା ମିଳିବ | ବହିପତର ଏପାଏଃତେ ନାମଆ |
| ମାଷ୍ଟର ତୁମକୁ ସାହାଯ୍ୟ କରିବେ | ମାଷ୍ଟର ଆପେକେଃ ସାହାଯ୍ୟ ପେୟୁ |
| ଘର ତିଆରି ପାଇଁ ସାହାଯ୍ୟ ମିଳିବ | ଅଜାଃ ବାଇ ନାଗିନ ସାହାଯ୍ୟ ନାମଆ |
| ଚାଷ ପାଇଁ ଛାହନ ସାର ସରକାର ଦେଉଛନ୍ତି | ଚାଷ ନାଗିନ ହିଚା ଆର୍ ସାର୍ ସରକାରେଃ ଅମଯାଦା |
| ଚାଷ କରି ଫସଲ ସୋସାଇଟିରେ ଵିକ | ଚାଷକାତେ ଫସଲ ସୋସାଇଟିରେ ଆକିଙ୍ଗେପେ |

## ଶୁଷ୍କାଞ୍ଚଳ ଉନ୍ନୟନ ସଂସ୍ଥା ପାଇଁ

| | |
|---|---|
| ସେଚ କୂଅାଁ (କୂଅ) କରିବ କି ? | ଚାଷ୍ ଡାଡପେ ଉରେୟୁାଚ ? |
| ତା ପାଇଁ ଋଣ ଦରକାର କି ? | ଇନା ନାଗିନ ରେଣି ଦରକାର ଚ ? |
| ଗୋଲ ଓ ବ୍ୟାଙ୍କ୍ ଋଣ ଦେଉଛନ୍ତି | ଗୋଲ ଆର୍ ବେଙ୍କ୍‌ରେ ରେଣିକୁ ଆମ ଯାଦା |
| ସାହୁକାର ସୁଧଠାରୁ ଗୋଲ ସୁଧ କମ୍ | ମହାଜନ ସୁଧତେୟୁଃ ଗୋଲ ସୁଧ୍‌ଦ କମ୍‌ଗେୟୁ |
| ଛେଳି, ମେଣ୍ଢା, କୁକୁଡ଼ା, ଗାଈ ପାଳିବା ପାଇଁ ଋଣ ନେବ କି ? | ମେରମ୍, ମିଣ୍ଡି, ସିମ୍, ଗାଈ କଷଂ ନାଗିନ୍ ରେଣିପେ ଇଦିୟୁାଚ ? |

ଏହି ଜନଜାତି ସହିତ ବହୁ ପ୍ରାଚୀନ କାଳରୁ ପାଣ, ଡମ୍ବ, କନ୍ଧ ଲୁହାର, କନ୍ଧ ଗୌଡ଼, କନ୍ଧ କୁମ୍ଭାର ପ୍ରଭୃତି ଉପଜାତିର ଲୋକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ମଧ୍ୟରେ ଅର୍ଥନୈତିକ, ସାମାଜିକ ଏବଂ ରାଜନୈତିକ ପ୍ରଗତି ଏବଂ ସଂହତି ବଜାୟ, ରଖିପାରିଛନ୍ତି । ସେମାନଙ୍କର ମଧ୍ୟ କଥିତ ଭାଷା 'କୁଇ' । କୁଇ ଭାଷା ଏହି ବିଭିନ୍ନ ଜନଜାତି ଏବଂ ସମ୍ପ୍ରଦାୟ ମଧ୍ୟରେ ଆଣି-ପାରିଛି ଐକ୍ୟ ଏବଂ ସୁଦୃଢ଼ କରିଛି ସାମାଜିକ ବନ୍ଧନ ।

ଆଞ୍ଚଳିକ ପ୍ରଭେଦର ଦୃଷ୍ଟିକୋଣରୁ କୁଇ ଭାଷାର ସାମାନ୍ୟ ରୂପା-ନ୍ତର ଦେଖାଯାଏ । ଉଦାହରଣ ସ୍ୱରୂପ ଫୁଲବାଣୀ ଜିଲ୍ଲା ମଧ୍ୟରେ ଉଦୟଗିରି, ବାଲିଗୁଡ଼ା, କୋଟଗଡ଼, ଦାରିଙ୍ଗବାଡ଼ି, ବେଲଘର ଏହି ସବୁ ଅଞ୍ଚଳରେ ଭାଷାର ପ୍ରଭେଦ ପରିଲକ୍ଷିତ ହୁଏ । ଏହି ଦୃଷ୍ଟିକୋଣରେ ବିଭିନ୍ନ ଜିଲ୍ଲାର କୁଇରେ ପ୍ରଭେଦ ଥିବା ସମୀଚୀନ ଅଟେ । ତେବେ ଏହି ସମ୍ବନ୍ଧରେ କୌଣସି ଗବେଷଣାମୂଳକ ତଥ୍ୟ ପ୍ରକାଶ ପାଇନାହିଁ । ଓଡ଼ିଶାର ବିଭିନ୍ନ ଅଞ୍ଚଳର କୁଇବୋଲିଗୁଡ଼ିକ ସଂଗ୍ରହ କରି ଗଭୀର ଅନୁଧ୍ୟାନ ଏବଂ ବିଶ୍ଳେଷଣ-ପୂର୍ବକ ଏହି ଭାଷାବିଷାରଦ ଓ ଭାଷାର ବ୍ୟାକରଣ ଓ ଅଭିଧାନ ପ୍ରଣେତା **Rev. W. W. Winfield** ଘୁମୁସର ଉଦୟଗିରି ତାଲୁକାର କୁଇ ଭାଷାକୁ 'ଷ୍ଟାଣ୍ଡାର୍ଡ' ଭାଷା ଭାବରେ ବିବେଚନା କରିଛନ୍ତି ।

କୋରାପୁଟ ଜିଲ୍ଲାର କନ୍ଧମାନେ 'କୁଭି' ଭାଷା କହନ୍ତି । 'କୁଭି' ଏବଂ 'କୁଇ' ମୂଳତଃ ଏକ ଏବଂ ଅବିଚ୍ଛେଦ୍ୟ । କେବଳ ଶବ୍ଦ ଗଠନରେ ଆଞ୍ଚଳିକ ପ୍ରଭେଦ ଥିବା ପରିଲକ୍ଷିତ ହୁଏ । ଓଡ଼ିଆ ସାହିତ୍ୟ ଏକାଡେମୀର ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ଏବଂ ଲବ୍ଧପ୍ରତିଷ୍ଠିତ ଲେଖକ ଓ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି ତତ୍କାଳୀନ ଭାରପ୍ରାପ୍ତ ସରକାରୀ କର୍ମବ୍ୟସ୍ତ ଜୀବନରେ କୁଭିଭାଷାରେ ଗୋଟିଏ ଉପାଦେୟ ପୁସ୍ତକ ପ୍ରକାଶ କରି ଭାଷାର ପ୍ରଚାର ଏବଂ ପ୍ରସାର ଦିଗରେ ପ୍ରଥମ ପଦକ୍ଷେପ ନେଇ ଆଦିବାସୀ ଭାଷାର କ୍ରମ ବିକାଶ ଦିଗରେ ତାଙ୍କର ମହନୀୟ ଅବଦାନ ଦେଇଛନ୍ତି । ଗୋଟିଏ ଜିଲ୍ଲା ମଧ୍ୟରେ ଆଞ୍ଚଳିକ ଗୁରୁତ୍ୱ ଦୃଷ୍ଟିରୁ କୁଇରେ ଥିବା କେତେକ ସାମଞ୍ଜସ୍ୟ ୪ ଓ ୫ ପୃଷ୍ଠାରେ ଦିଆଯାଇଥିବା ଉଦାହରଣରୁ ସହଜରେ ବୁଝିହେବ ।

# କୁଇ ବର୍ଣ୍ଣମାଳା :

କୁଇ ଭାଷାର ଶବ୍ଦ ଗଠନ ଏବଂ ଉଚ୍ଚାରଣଗତ ବୈଶିଷ୍ଟ୍ୟର ଅନୁଧ୍ୟାନ ଏବଂ ବିଶ୍ଳେଷଣ କଲେ ଜଣାଯାଏ ଯେ ଭାଷାଟି ଶବ୍ଦବହୁଳ ଏବଂ ଅର୍ଥପୂର୍ଣ୍ଣ । ଏହି ଭାଷାରେ ବ୍ୟଞ୍ଜନବର୍ଣ୍ଣର ଦୀର୍ଘ ଉଚ୍ଚାରିତ ଶବ୍ଦ ଆଦୌ ଦେଖାଯାଏ ନାହିଁ । କେବଳ ମୃଦୁ ଉଚ୍ଚାରିତ ଶବ୍ଦହିଁ ଦେଖାଯାଏ । ତେଣୁ କଥିତ ଭାଷା ଅତ୍ୟନ୍ତ ନରମ ଏବଂ ଶ୍ରୁତିମଧୁର ହେବା ସ୍ୱାଭାବିକ । କୁଇ ଭାଷାରେ ସ୍ୱତନ୍ତ୍ର ଲିପି ପ୍ରସ୍ତୁତ କରାଗଲେ ଓଡ଼ିଆ ବର୍ଣ୍ଣମାଳାର ଅ, ଆ, ଇ, ଈ, ଉ, ଊ, ଏ, ଐ, ଓ, ଔ—ଏହି ଦଶଗୋଟି ସ୍ୱର ବର୍ଣ୍ଣଗୁଡ଼ିକ କୁଇ ଭାଷା ଅନ୍ତର୍ଭୁକ୍ତ ହେବେ ଏବଂ ପ୍ରତ୍ୟେକ ସ୍ୱରବର୍ଣ୍ଣର ଦୀର୍ଘ ଉଚ୍ଚାରଣ ଦେଖାଯାଏ । ବ୍ୟଞ୍ଜନବର୍ଣ୍ଣର କ, ଗ, ଜ, ଟ, ଡ, ଣ, ତ, ଦ, ନ, ପ, ବ, ମ, ର, ଲ, ସ, ହ, ସୂ, ଏହି ୧୭ ଗୋଟି ମୃଦୁ ଉଚ୍ଚାରିତ ଅକ୍ଷର କୁଇ ଭାଷାରେ ଅନ୍ତର୍ଭୁକ୍ତ ହେବେ । କୁଇ ଭାଷାରେ ଅନ୍ତର୍ଭୁକ୍ତ ନ ହେବା ଦୀର୍ଘ ଉଚ୍ଚାରିତ ଅକ୍ଷରଗୁଡ଼ିକ ଯଥାକ୍ରମେ ଖ, ଘ, ଙ, ଚ, ଛ, ଝ, ଞ, ଠ, ଢ, ଥ, ଧ, ଫ, ଭ, ଯ, ଳ, ଶ, ଷ, କ୍ଷ । ଏଗୁଡ଼ିକର ସଂଖ୍ୟା ୧୮ ।

କୁଇ ବର୍ଣ୍ଣମାଳା ଓ ଓଡ଼ିଆ ବର୍ଣ୍ଣମାଳାର ଉଚ୍ଚାରଣ ସହ ତୁଳନା—

| ବର୍ଣ୍ଣମାଳା | ଓଡ଼ିଆ ସହ ସମାନ | ଓଡ଼ିଆରେ ନାହିଁ | ଓଡ଼ିଆଠୁ ଦୀର୍ଘ |
|---|---|---|---|
| ସ୍ୱର ବର୍ଣ୍ଣ | ଅ, ଆ, ଇ, ଈ, ଉ, ଊ, ଏ, ଐ, ଓ, ଔ, | ଅ', ଆ', ଏ', ଓ', | ଅ', ଆ', ଏ', ଓ' |
| ବ୍ୟଞ୍ଜନ ବର୍ଣ୍ଣ | କ, ଗ, ଜ, ଟ, ଡ଼, ଡ, ଣ, ତ, ଦ, ନ, ପ, ବ, ମ, ର, ଲ, ସ, ହ, ସୂ, | କ', ଗ', ଜ', ଟ', ଡ଼', ଡ', ଣ', ତ', ଦ', ନ', ପ', ବ', ମ', ର', ଲ', ସ', ହ', ସୂ', | କ', ଗ', ଜ,' ଟ', ଡ଼', ଣ', ତ', ଦ', ନ', ପ', ବ', ମ', ର,' ଲ,' ସ,' ହ', ସୂ |

## କୁଇର ଆଞ୍ଚଳିକ ସାମଞ୍ଜସ୍ୟ

| ଓଡ଼ିଆ ଶବ୍ଦ | ଉଦୟଗିରି କୁଇ | ଦାରିଙ୍ଗବାଡ଼ି କୁଇ | ବାଲିଗୁଡ଼ା କୁଇ | କୋଟଗଡ଼ କୁଇ |
|---|---|---|---|---|
| ପବନ | ବିଲୁ | ବ୍ଲଉ | ବ୍ଲହୁ | ବ୍ଲକା |
| ସକାଳ | ଡାଇସି | ଡାଇସି | ଲାଇସି | ଲାଇସି |
| ଜହ୍ନ | ଡା'ଞ୍ଜୁ | ଡାଞ୍ଜୁ | ଲା'ଞ୍ଜୁ | ଲା'ଞ୍ଜୁ |
| ଝିଅ | ମାର | ମ୍ରାଗା | ମ୍ରାଉ | ବୁଡ଼ି |
| ସମୁଦ୍ରକୁଣ୍ଡୀ | ସାମାଦେ'ଡ଼ି | ସାମ୍ଦ୍ରଆଲୁ | ସାମାଦେଡ଼ି | ପା'ରେ ଆଲୁ |
| ବାଦୁଡ଼ି | ଚ୍ରେକା | ବାଦ୍ଗୁଡ଼ା | କାକବଦୁଡ଼ି | କାସ୍ତ୍ରା |
| ଓଡ଼ଣ | କେତାକା | କେତାକା | କେତେକ୍ | ନାଡାଙ୍ଗ |
| ନାଗସାପ | ଦାଭସ୍ରା'ସୁ | ଦାଭସ୍ରା'ସୁ | ଦାଦାର୍ ସ୍ରା'ସୁ | ଅଶ୍ରେନ୍ ସ୍ରା'ସୁ |
| ଅଗ୍ନିଙ୍କୁକୁଡ଼ା | ଠାଡ୍ରା କଜୁ | ଠାଡ୍ରା କଜ | ଠାଡ୍ରା କଜୁ | ଡାଡ୍ରା କଜୁ |
| ପଥର | ବାଡ଼ି | ବାଲି | ବାଲି | ବାଲି |
| କାଠ | ବେଜୁ | ବେଜୁ | ବେସ୍କୁ | ବେଗୁ |
| ମାଉସୀ | ଆଙ୍ଗ | ଆଙ୍ଗ | ଇକାପୁ | ଆଙ୍ଗ |
| ପିଉସୀ | ଆମା | ଆମା | ଆମା | ଆମେ |
| ସ୍ତ୍ରୀ | କୁଡ଼ା | ମ୍ଲେହାଡ଼ି | କୁଡ଼ା | ମେଲ୍ଡ଼ଙ୍ଗହେଲ |
| ପୁଅ | ମିରେଞ୍ଜୁ | ବୁଆ | ବାବୁ | ମି ଏଞ୍ଜୁ |
| ପିମ୍ପୁଡ଼ି | ସର', ତା'ରୁ | ସର' | ବ'ଣ୍ଡା' | ପିପଢ଼ୀ |

| | | | | |
|---|---|---|---|---|
| ବଗ | ବଗ | ବଗାଲ | ବ'କ୍ଲ | କେଡାକ'କ |
| କୁକୁର | ନାହ୍ଡ଼ | ନାହ୍ଡ଼ | ନାହ୍ଡ଼ | ନାହ୍ଡ଼ |
| ଘର (ପକ୍ଷୀ ଘର) | କେଡ୍ରୁ | କେଡ୍ରୁ | କେଲ୍ଲୁ | ବଆଂ |
| ଝିଲମିଲ | ଜଲମିଲ | ଜଲମିଲ | ବଜ୍ଞାପାଠ | ସୁକାଁବଲଂ |
| ବଲୁଆ | ଗାଦା | କଡଲ | ଗାଦା | କଲେ |
| ମାଛ | ମୀନୁ | ମୀନୁ | ମୀନୁ | ମୀନୁ |
| କାଉ | କା'କା | କା'କା | କା'କା | କା'କା |
| କୁକୁଡ଼ା | କଜୁ | କଜୁ | କଜୁ | କଜୁ |
| ଚଢ଼େଇ | ପଠା | ପଠା | ପଠା | ପଠା |
| ଭାଲୁ | ଅଲି | ଅଲି | ଅଲି | ଅଲି |
| ମାମୁଁ | ମାମା | ମାମା | ମାମା | ମାମା |
| ଆଈ | ଆତା | ଆତା | ଆତା | ଆତା |
| ଅଜା | ଆକେ | ଆକେ | ଆକେ | ଆକେ |
| ବାପା | ଆବା | ଆବା | ଆବା | ଆବା |
| ଯୁବକ | ଲବେଞ୍ଜୁ | ଲବେଞ୍ଜୁ | ଲବେଞ୍ଜୁ | ଲବେଞ୍ଜୁ |
| ତାରା | ସୁକା | ସୁକା | ସୁକା | ସୁକା |
| ବର୍ଷା | ପିଜୁ | ପିଜୁ | ପିଜୁ | ପିଜୁ |
| | କୁତୁକୁଏଡ଼ | କୁତୁକୁଏଡ଼ | କୁତୁକୁଏଡ଼ | କୁତୁକୁଏଡ଼ |
| ଥଣ୍ଡା | ଜିଲ | ଜିଲ | ଜିଲ | ଜିଲ |

# ଦ୍ୱି ଅର୍ଥବୋଧକ ଶବ୍ଦ :

ଏହି ଭାଷାରେ ଦ୍ୱି ଅର୍ଥବୋଧକ ଶବ୍ଦ ବହୁଳ ପରିମାଣରେ ଦେଖା ଯାଏ । ଶବ୍ଦଗୁଡ଼ିକ ଅପରିବର୍ତ୍ତିତ ରହି କେବଳ ଉଚ୍ଚାରଣଗତ ପ୍ରଭେଦ ଯୋଗୁଁ ଭାବ ବଚନମଧ୍ୟରେ ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଏ । ଏହି ଉପଜାତିର ଲୋକ ଶବ୍ଦ ଭିତରେ ଅକ୍ଷର ସମୂହର ହ୍ରସ୍ୱ ଏବଂ ଦୀର୍ଘ ଉଚ୍ଚାରଣ ଯୋଗୁଁ ପୃଥକ୍ ଅର୍ଥ ପ୍ରକାଶ କରେ । ଶବ୍ଦ ମଧ୍ୟରେ ଥିବା କୌଣସି ଅକ୍ଷରରେ ସ୍ୱର ଲମ୍ବେଇ ଉଚ୍ଚାରଣ ପାଇଁ ଉକ୍ତ ଅକ୍ଷରର ଡାହାଣପଟ ଉପରେ (') ଚିହ୍ନ ଦେବା ବ୍ୟବସ୍ଥା କରାଯାଇଛି । ଯଥା :—

| | |
|---|---|
| କଜୁ (କୁକୁଡ଼ା) | କ'ଜୁ (ଶିଙ୍ଗ) |
| କପ୍‌କା (ବସିବା) | କ'ପ୍‌କା (କମାଇବା) |
| ନସ୍କା (ଚୁମ୍ବନ ଦେବା) | ନ'ସ୍କା (ଦଉଡ଼ି ସମୂହ) |
| କ'ଡ଼ (ବଳଦ) | କଡ଼ୀ (କଣିବ) |
| ଆକା (ଅଖା) | ଆ'କା (ଘର) |
| | ଆ'କା (ହେବାକୁ ନିର୍ଦ୍ଦେଶ ଦେବା) |
| ଆ'ଙ୍ଗା (ଅଟକାଇବା) | ଆ'ଙ୍ଗା (ଗୋଠ ଚରାଇବା) |
| ଆଜ (ଭଯ଼) | ଆ'ଜ (କୁଆପଥର) |
| ଆନେ (ସେଠାରେ) | ଆ'ନେ (ହେବ) |
| ଇନେ (କହିବ) | ଇନେ (ଏଠାରେ) |
| କାବ୍ରା (ଖରା) | କା'ଙ୍ଗା (ଖାଦ୍ୟ) |
| ମା'ଗ (ଡେଣା) | ମା'ଗ (ଜନ୍ମ କରିବା) |
| ପାଣ୍ଡୁ (ଦାନ୍ତ) | ପା'ଣ୍ଡୁ (କ୍ଷୀର) |
| ମାଟା (ବୁଣିବା) | ମାଟା (ମାଟିଆ) |
| ଖିଜା (ନଦରୁ ଉଠିବା) | ଖିଜା (ବୁଲି ପଡ଼ିବା) |
| ସେପା (ମଧୁର) | ସେପା (ଶିଙ୍ଘି) |
| | ସେ'ପା (ଝାଡ଼ୁ କରିବା) |
| ସଜୁ (ହିଙ୍କ) | ସ'ଜୁ (ଘା') |

# କୁଭି ଓ କୁଇ

ବର୍ତ୍ତମାନ ପରିଦୃଷ୍ଟ ହେଉଥିବା କୁଭି ଓ କୁଇ ଦୁଇଟି ପୃଥକ୍ ଭାଷା ରୂପେ ବିବେଚିତ ହେଉଥିଲେହେଁ ଏହି ଦୁଇଗୋଟି ଭାଷା ମୂଳତଃ ଗୋଟିଏ ଭାଷାରୁ ଭଙ୍ଗିଯାଇଥିବା ମନେ ହୁଏ । କୁଇ ଏବଂ କୁଭି ଭାଷାର ତୁଳନାତ୍ମକ ଅନୁଧ୍ୟାନ କଲେ ଜଣାଯାଏ ଯେ ଦୁଇଟି ଭାଷାର ଶବ୍ଦବିନ୍ୟାସ ଏବଂ ଆପେକ୍ଷିକ ଐକ୍ୟ ଏବଂ ସାଦୃଶ୍ୟ ସହଜରେ ଅନୁମେୟ ହୁଏ । ଗୋଟିଏ ତୁଳାନାତ୍ମକ ସାଦୃଶ୍ୟ ଦର୍ଶାଇଲେ ଏହା ସହଜରେ ବୁଝିହେବ । ଯଥା—

୧ । କୁଭିର 'ହ' କୁଇରେ 'ସ' ହୋଇଛି ।
୨ । ,, 'ଯ୍' ,, 'ଜ' ,,
୩ । ,, 'ଚ' ,, 'ସ' ,,
୪ । ,, 'ଲ' ,, 'ଡ଼' ,,

ଉଦାହରଣ :—

| କୁଭି ଶବ୍ଦ | କୁଇ ଶବ୍ଦ | ଓଡ଼ିଆ ଅର୍ଥ |
|---|---|---|
| ହୁକା | ସୁକା | ଡାଗ |
| ହାଚେ | ସାସେ | ଗଲି |
| ହାଚେ | ସା'ଚେ | ମଲି |
| ହାଲ୍ଲେଏ | ସିଡ଼େଏ | ନାହିଁ |
| ହାଜ | ସାଜ | ଯିବ |
| ହ'ରୁ | ସ'ରୁ | ବଣ |
| ନାଯୁଁ | ନାଜ | ଗାଁ |
| ପିଯୁ | ପିଜୁ | ବର୍ଷା |
| ମାଯୁ | ମା'ଜୁ | ସମ୍ବର |
| ବେସ୍ତେଯୁଁ | ବେସ୍ତେଞ୍ଜୁ | କହିଲି |
| ଏଆଯୁଁ | ଏଆଞ୍ଜୁ | ସେ |
| ମାଚ୍ଚେଯୁଁ | ମାସେଞ୍ଜୁ | ଥିଲି (ପୁଂ:ଲି:) |
| ମାଚୁ | ମାସୁ | ଥିଲେ (ସ୍ତ୍ରୀ. ଲି.) |
| ହାଚେଯୁ | ସାସେଞ୍ଜୁ | ଗଲି |
| ପାଲୁ | ପାଡ଼ୁ | ଦାନ୍ତ |
| ଲେଞ୍ଜୁ | ଡାଞ୍ଜୁ | ଚନ୍ଦ୍ର |

କୁଇ ଶବ୍ଦଗୁଡ଼ିକର ଶବ୍ଦବିନ୍ୟାସ ସରଳ, ସହଜ ଏବଂ ଉଚ୍ଚାରଣ-ଗତ କଷ୍ଟ ଅନୁଭୂତ ହୁଏ ନାହିଁ । ମୂଳତଃ କୁଇରେ ତ ଦେଖାଯାଏ ନାହିଁ । ତେଣୁ ଉକ୍ତ ଉପଜାତିମାନେ ତାହାର ଉଚ୍ଚାରଣ କରିପାରନ୍ତି ନାହିଁ । ଅତଏବ ତ ଅପଭ୍ରଂଶ ହୋଇ 'ସ' ରେ ପରିଣତ ହେବା ସମୀଚୀନ ମନେ ହୁଏ । କୁଇ ଏବଂ କୁଭିର ଆପେକ୍ଷିକ ସମୋଚ୍ଚାରିତ କେତେକ ଶବ୍ଦ ତଳେ ଦିଆଗଲା । ଯଥା –

| କୁଇ ଶବ୍ଦ | କୁଭି ଶବ୍ଦ | ଓଡ଼ିଆ ଅର୍ଥ |
|---|---|---|
| ପେ'ନୁ | ପେ'ନୁ | ଦେବତା |
| କାନୁ | କାଁନୁ | ଆଖି |
| ମିଁଙ୍ଗେ | ମିଁଙ୍ଗେ | ତୁମ୍ଭମାନଙ୍କୁ |
| ଆ'କୁ | ଆ'କୁ | ପତ୍ର |
| କାଣ୍ଡି | କାଣ୍ଡି | ଲୁହ |
| ଆ'ବା | ଆ'ବା | ବାପା |
| ଦା'ଦା | ଦା'ଦା | ବଡ଼ଭାଇ |
| ଆମା | ଆମା | ପିଉସୀ, ମାଇଁ |
| ମା'ମା | ମା'ମା | ମାମୁଁ |

# ଆଦିବାସୀ କନ୍ଧ (କୁଇ) ଭାଷା ଶିକ୍ଷା

## ଫୁଲବାଣୀ, କଳାହାଣ୍ଡି, ଦଶପଲ୍ଲା (ପୁରୀ) ମୁକାଗଡ଼ (ଗଞ୍ଜାମ)

| ଓଡ଼ିଆ | କନ୍ଧ (କୁଇ) |
|---|---|
| ଆସ | ବାମୁଁ |
| ବସ | କକୁମୁଁ |
| କାହିଁକି ଡାକିଲ | ଇନାକ ଆର୍ଗାଞ୍ଚି |
| କଥା ହେବା | କାଠା ଆନା |
| ଦୁଃଖସୁଖ ହେବା | ସାକ ଦୁଃଖ ଆନା |
| ତୁମ୍ଭ ଘରଲୋକ | ମି ଇଡ଼ୁ ଲକୁ |
| ତୁମ୍ଭ ଲୋକ ଭଲ | ମି ଲକୁ ନେଗାରୁ |
| ପିଲାମାନେ ଭଲ ଅଛନ୍ତି | ମି ଡାଙ୍ଗା ନେଗିମାନେରୁ |
| ଜର ହେଉଛି | ନମେଗ୍ରି ଆଇ ମାଇ |
| ଜର ଛାଡ଼ିଲା | ନମେଗ୍ରି ପିଃତେ |
| ଜର ଛାଡ଼ୁନାହିଁ | ନମେଗ୍ରି ପିଃପାଏ |
| କ'ଣ ଖାଉଛୁ | ଏନା ତିଞ୍ଜି ମାଞ୍ଜୀ |
| ମାଣ୍ଡିଆ ପେଜ | ମାଣ୍ଡିଆ ଜାଉ |
| ପେଜ ଖାଉଛି | ଏଜୁ ଉନୁମ୍ବି ମାଇ |
| କୁଆଡ଼େ ଯିବୁ | ଇମ୍ବେକ ସାଜ |
| ମୁଁ କୁଆଡ଼େ ଯିବ ନାହିଁ | ଇମ୍ବେକ ମିଶା ଶାଲେନୁ |
| ଡାକୁଛି | ଆର୍ପିମାଇ |
| କାହିଁକି ଡାକୁଛ | ଇନାକ ଆର୍ପି ମାଞ୍ଜୀ |
| ମୁଁ ଯାଉଛି | ଆନୁ ସାଜ ମାଇ |
| ମୁଁ ଯାଇଥିଲି | ଆନୁ ସାଜାମାସେ |
| ସେ ମିଛ କଥା | ଏବାଞ୍ଜୁ ମିଛ ବେସ୍ପି ନେଞ୍ଜୁ |
| ସେ କଛି ଜାଣିନାହିଁ | ଏବାଞ୍ଜୁ ଗଡମୁନା ପୁନାମ୍ବାସିଡ଼େଞ୍ଜୁ |
| ମୁଁ ଯିବ | ଆନୁ ମାଇ |

| ଓଡ଼ିଆ | କନ୍ଧ (କୁଇ) |
|---|---|
| କାହିଁକି | ଇନାଡ଼କି |
| ବଡ଼ଲୋକ | ଦେଗ୍ଗ ଲେକୁ |
| ସ୍ଥାନ | ଜଗାଞ୍ଜି |
| ଆସିଲ | ବାଣ୍ଡିଗିନା |
| କେବେ ଯିବ | ଏସେକା ସାଜେରୁ |
| ମୁଁ ଥିବ | ଆନୁ ମାଞ୍ଜା ଦୁଃଇ |
| ଯିବା | ସାନା |
| ଯିବା ନାହିଁ | ସାଲ୍‌ବବା କୁନା |
| ମୁଁ ଯାଏଁ | ଆନୁ ସାଇ |
| ମୁଁ ଯାଉଛି | ଆନୁ ସାଜି ମାଇ |
| ମୁଁ ଯାଇଛି | ଆନୁ ସାଜା ମାଇ |
| ମୁଁ ଗଲି | ଆନୁ ସାସେ |
| ମୁଁ ଯାଇଥିଲି | ଆନୁ ସାଜା ମାସେ |
| ମୁଁ ଯାଉଥିଲି | ଆନୁ ସାଜି ମାସେ |
| ମୁଁ ଯିବି | ଆନୁ ସାଇ |
| ମୁଁ ଯାଇଥିବି | ଆନୁ ସାଜା ଦୁଇ |
| ମୁଁ ଯାଉଥିଲି | ଆନୁ ସାଜି ମାସେଏ |
| ମୁଁ ଯାଉଥିବି | ଆନୁ ସାଜି ଦୁଇ |
| ଆମେ ଦୁହେଁ ଯାଉ | ଆମୁଁ ଋଆମୁଁ ସାନାମୁ |
| ଆମେ ଦୁହେଁ ଯାଉଛୁ | ଆମୁଁ ଋଆମୁଁ ସାଜି ନାମୁ |
| ଆମେ ଦୁହେଁ ଯାଇଛୁ | ଆମୁଁ ଋଆମୁଁ ସାଜା ନାମୁ |
| ଆମେ ଦୁହେଁ ଗଲୁ | ଆମୁଁ ଋଆମୁଁ ସାସାମୁ |
| ଆମେ ଦୁହେଁ ଯାଇଥିଲୁ | ଆମୁଁ ଋଆମୁଁ ସାଜାସାମୁଁ |
| ଆମେ ଦୁହେଁ ଯାଉଥିଲୁ | ଆମୁଁ ଋଆମୁଁ ସାଜିସାମୁ |
| ଆମେ ଦୁହେଁ ଯିବୁ | ଆମୁଁ ଋଆମୁଁ ସାନାମୁଁ |
| ଆମେ ଦୁହେଁ ଯାଇଥିବୁ | ଆମୁଁ ଋଆମୁଁ ସାଜାଦ୍ଧନାମୁଁ |
| ଆମେ ଦୁହେଁ ଯାଉଥିବୁ | ଆମୁଁ ଋଆମୁଁ ସାଜାଦ୍ଧନାମୁଁ |

| ଓଡ଼ିଆ | କନ୍ଧ (କୁଇ) |
|---|---|
| ଆମ୍ଭେଦୁହେଁ ଯାଇଥାନ୍ତୁ | ଆମ୍ମୁଁର, ଆମ୍ମୁଁ ସାଜାଦ୍ଦନା ମୁଁମା |
| ଆମ୍ଭେମାନେ ଯାଉ | ଆମ୍ମୁଁ ସାନାମ୍ମୁଁ |
| ଆମ୍ଭେମାନେ ଯାଉଛୁ | ଆମ୍ମୁଁ ସାଜ୍ଜନାମ୍ମୁଁ |
| ଆମ୍ଭେମାନେ ଯାଇଛୁ | ଆମ୍ମୁଁ ସାଜ୍ଜନାମ୍ମୁଁ |
| ଆମ୍ଭେମାନେ ଗଲୁ | ଆମ୍ମୁଁ ସାସାମ୍ମୁଁ |
| ଆମ୍ଭେମାନେ ଯାଇଥିଲୁ | ଆମ୍ମୁଁ ସାଜା ମାମ୍ମୁଁ |
| ଆମ୍ଭେମାନେ ଯାଉଥିଲୁ | ଆମ୍ମୁଁ ସାଜ୍ଜା ସାନାମ୍ମୁଁ |
| ଆମ୍ଭେମାନେ ଯିବୁ | ଆମ୍ମୁଁ ସାନାଁମ୍ମୁ |
| ଆମ୍ଭେମାନେ ଯାଇଥିବୁ | ଆମ୍ମୁଁ ସାଜାଦ୍ଦନାମ୍ମୁଁ |
| ଆମ୍ଭେମାନେ ଯାଉଥିବୁ | ଆମ୍ମୁଁ ସାଜ୍ଜାଦ୍ଦନାମ୍ମୁଁ |
| ଆମ୍ଭେମାନେ ଯାଇଥାନ୍ତୁ | ଆମ୍ମୁଁ ସାଜା ଦ୍ଦନାମ୍ମୁମା |
| ତୁ ଯାଆ | ଇନ୍ନୁ ସାଲ୍ଲୁମ |
| ତୁ ଯାଉଛୁ | ଇନ୍ନୁ ସାଜ୍ଜଞ୍ଜୀ |
| ତୁ ଯାଇଛୁ | ଇନ୍ନୁ ସାଜାଞ୍ଜି |
| ତୁ ଗଲୁ | ଇନ୍ନୁ ସାଣି |
| ତୁ ଯାଇଥିଲୁ | ଇନ୍ନୁ ସାଜାମାସି |
| ତୁ ଯାଉଥିଲୁ | ଇନ୍ନୁ ସାଜ୍ଜା ମାସି |
| ତୁ ଯିବୁ | ଇନ୍ନୁ ସାଜ୍ଜ |
| ତୁ ଯାଇଥିବୁ | ଇନ୍ନୁ ସାଜାଦୁଦ୍ଦ |
| ତୁ ଯାଉଥିବୁ | ଇନ୍ନୁ ସାଜ୍ଜାଦ୍ଧାମ୍ମୁଁ |
| ତୁ ଯାଇଥାନ୍ତୁ | ଇନ୍ନୁ ସାଜା ଦୁଣ୍ଡମା |
| ତୁମେ ଯାଅ | ଇନ୍ନୁ ସାଲ୍ଲୁମ୍ମୁ |
| ତୁମେ ଯାଉଛ | ଇରୁ ସାଜ୍ଜା ଞ୍ଜେରୁ |
| ତୁମେ ଯାଇଛ | ଇରୁ ସାଜାଞ୍ଜେରୁ |
| ତୁମେ ଗଲ | ଇରୁ ସାସେରୁ |
| ତୁମେ ଯାଇଥିଲ | ଇରୁ ସାଜା ସେରୁ |
| ତୁମେ ଯାଉଥିଲ | ଇରୁ ସାଜ୍ଜା ମାସେରୁ |

| ଓଡ଼ିଆ | କନ୍ଧ (କୁଇ) |
|---|---|
| ତୁମେ ଯିବ | ଇରୁ ସାଜେରୁ |
| ତୁମେ ଯାଇଥିବ | ଇରୁ ସାଜା ଦୁଦେରୁ |
| ତୁମେ ଯାଉଥିବ | ଇରୁ ସାଜୀ ଦୁଦେରୁ |
| ତୁମେ ଯାଇଥାନ୍ତ | ଇରୁ ସାଜା ଦୁଦେରୁମା |
| ତୁମ୍ଭେମାନେ ଯାଅ | ଇରୁ ସାଜୁ |
| ତୁମ୍ଭେମାନେ ଯାଉଛ | ଇରୁ ସାଜଞ୍ଜେରୁ |
| ତୁମ୍ଭେମାନେ ଯାଇଛ | ଇରୁ ସାଜାଞ୍ଜେରୁ |
| ତୁମ୍ଭେମାନେ ଗଲ | ଇରୁ ସାଣେରୁ |
| ତୁମ୍ଭେମାନେ ଯାଇଥିଲ | ଇରୁ ସାଜାସେରୁ |
| ତୁମ୍ଭେମାନେ ଯାଉଥିଲ | ଇରୁ ସାଜୀସେରୁ |
| ତୁମ୍ଭେମାନେ ଯିବ | ଇରୁ ସେସା ସାଯେରୁ |
| ତୁମ୍ଭେମାନେ ଯାଇଥିବ | ଇରୁ ସାଜା ଵଦେରୁ |
| ତୁମ୍ଭେମାନେ ଯାଉଥିବ | ଇରୁ ସାଜୀ ଦୁଦେରୁ |
| ତୁମ୍ଭେମାନେ ଯାଇଥାନ୍ତ | ଇରୁ ସାଜା ଵଦେରୁମା |
| ସେ ଯାଏ | ଏ ଆଞ୍ଜୁ ସାନେଞ୍ଜୁ |
| ସେ ଯାଉଛି | ଏଆଞ୍ଜୁ ସାଜନେଞ୍ଜୁ |
| ସେ ଗଲା | ଏଆଞ୍ଜୁ ସାସେଞ୍ଜୁ |
| ସେ ଯାଇଥିଲା | ଏଆଞ୍ଜୁ ସାଜାସେଞ୍ଜୁ |
| ସେ ଯାଉଥିଲା | ଏଆଞ୍ଜୁ ସାଜସେଞ୍ଜୁ |
| ସେ ଯିବ | ଏଆଞ୍ଜୁ ସାନେଞ୍ଜୁ |
| ସେ ଯାଇଥିବ | ଏଆଞ୍ଜୁ ସାଜା ଵନେଞ୍ଜୁ |
| ସେ ଯାଉଥିବ | ଏଆଞ୍ଜୁ ସାଜୀ ଵନେଞ୍ଜୁ |
| ସେ ଯାଇଥାନ୍ତା | ଏଆଞ୍ଜୁ ସାଜା ଵନେଞ୍ଜୁମା |
| ସେ ଦୁହେଁ ଯାଆନ୍ତି | ଏଆରୁ ଗଆରୁ ସାଜନେରୁ |
| ସେ ଦୁହେଁ ଯାଉଛନ୍ତି | ଏଆରୁ ଗଆରୁ ସାଜନେରୁ |
| ସେ ଦୁହେଁ ଯାଇଛନ୍ତି | ଏଆରୁ ଗଆରୁ ସାଜାନେରୁ |

| ଓଡ଼ିଆ | କନ୍ଧ (କୁଇ) |
|---|---|
| ସେ ଦୁହେଁ ଗଲେ | ଏଆରୁ ଈଆରୁ ସାସେରୁ |
| ସେ ଦୁହେଁ ଯାଇଥିଲେ | ଏଆରୁ ଈଆରୁ ସାଜା ସେରୁ |
| ସେ ଦୁହେଁ ଯାଉଥିଲେ | ଏଆରୁ ଈଆରୁ ସାଞ୍ଜା ସେରୁ |
| ସେ ଦୁହେଁ ଯିବେ | ଏଆରୁ ଈଆରୁ ସାନେରୁ |
| ସେ ଦୁହେଁ ଯାଇଥିବେ | ଏଆରୁ ଈଆରୁ ସାଜା ଦନେରୁ |
| ସେ ଦୁହେଁ ଯାଉଥିବେ | ଏଆରୁ ଈଆରୁ ସାଞ୍ଜା ଦନେରୁ |
| ସେ ଦୁହେଁ ଯାଇଥାନ୍ତେ | ଏଆରୁ ଈଆରୁ ସାଜା ଦନେରୁମା |
| ସେମାନେ ଯାଆନ୍ତେ | ଏଆରୁ ଈଆରୁ ସାନେରୁମା |
| ସେମାନେ ଯାଉଛନ୍ତି | ଏଆରୁ ସାଜନେରୁ |
| ସେମାନେ ଯାଇଛନ୍ତି | ଏଆରୁ ସାଜାନେରୁ |
| ସେମାନେ ଗଲେ | ଏବାରୁ ସାସେରୁ |
| ସେମାନେ ଯାଇଥିଲେ | ଏବାରୁ ସାଜାସେରୁ |
| ସେମାନେ ଯାଉଥିଲେ | ଏବାରୁ ସାଞ୍ଜା ସେରୁ |
| ସେମାନେ ଯିବେ | ଏବାରୁ ସାନେରୁ |
| ସେମାନେ ଯାଉଥିବେ | ଏବାରୁ ସାଜା ଦନେରୁ |
| ସେମାନେ ଯାଉଥିବେ | ଏବାରୁ ସାଞ୍ଜା ଦନେରୁ |
| ସେମାନେ ଯାଇଥାନ୍ତେ | ଏବାରୁ ସାଜା ଦନେରୁମା |
| ତୁ ଯା | ଇନୁ ସାଲମୁ |
| ତୁମେ ଯାଅ | ଇରୁ ସାୟୁ |
| ତୁମେମାନେ ଯାଅ | ଇରୁ ଗୁଲେ ସାୟୁ |
| ସେ ଯାଉ | ଈଞ୍ଜୁ ସାଲ କାଞ୍ଜୁ |
| ସେ ଦୁହେଁ ଯାଆନ୍ତୁ | ଇଆରୁ ଈଆରୁ ସାଲକାନ୍ତୁ |
| ସେମାନେ ଯାଆନ୍ତୁ | ଏଆରୁ ସାଲକାରୁ |
| ମୁଣ୍ଡ | ତାଲଉ |
| ଆଖି | କାନୁକା |
| ଦେହ | ଗାଣ୍ଡି |
| ପାଟି | ସୁଡ଼ା |

| ଓଡ଼ିଆ | କନ୍ଧ (କୁଇ) | ଓଡ଼ିଆ | କନ୍ଧ (କୁଇ) |
|---|---|---|---|
| କାନ | ହିକା | ନାକ | ମୁଙ୍ଗେଲ |
| ଦାନ୍ତ | ପାଲ୍କା | ଜିଭ | ବାଙ୍ଗସି |
| ବେକ | ଓକା | କାନ୍ଧ | ହପି |
| ପିଠି | ବେଅଡ଼ | ଗୁଣ୍ଡି | ଡାକ |
| ହାତ | କାକା | ପେଟ | ଟୂଉଟୁ |
| ଗୋଡ଼ | କାଟୁକା | ଆଙ୍ଗୁଠି | ବାସକାକା |
| ନଖ | ଉଙ୍ଗୁଳକା | ଅଣ୍ଟା | ରେଡ଼ି |
| ପିଚ୍ଛ | ବେଚଡ଼ | ଆଣ୍ଠୁ | ଗାଟୁସି |
| ପାଦ | ପାଦ | ବାପ | ଆବା |
| ମା | ଇଆ | ପୁଅ | ମ୍ରିଏଞ୍ଜୁ |
| ଝିଅ | ଆପି | ଭଉଣୀ | ବୁଡ଼ି |
| ବୋହୂ, ଭାଉଜ | ବାଇ | ଦାଦା | କକୁ |
| ଖୁଡ଼ି | ଆମା | ଗୁହାଳ | ଗଦେହଲି |
| କୂଅ | କୁବା | ମାଟି | ବଦ୍ରା |
| କାଦୁଅ | ଗେଜ | ବାଲି | ବାଲଅ |
| ଚୂନ | ସୁନ | ଖୁଣ୍ଟ | ଗୁଟା |
| ନିଆଁ | ନାଡ଼ | ପାଣି | ସିର |
| ଖାଦ୍ୟ | ଏଜୁପାଲ୍ଲ | କାଠ | ବେସୁକା |
| ଚୂଲି | ସଡ଼ୁ | ପାଉଁଶ | ନାଡ଼ଦୁଲ |
| ଅଙ୍ଗାର | ନାଡ଼ଶ୍ରାଙ୍ଗାଙ୍ଗି | ହାଣ୍ଡି | ଟେକ |
| ଢାଙ୍କୁଣି | ଡାକୁଣି | ଲାଉତୁମ୍ବା | ଓଣ୍ଡି |
| ଦୁଆର | ଗହ୍ବା | ବୋତଲ | କାଞ୍ଜୁ |
| ଘଡ଼ି | ଗଣ୍ଟା | ଗିଲାସ | ଗିଲାସି |
| ଚାଟିଆ | ବଟକ | କଂସା | କଂସା |
| ଡେକ୍‌ଚି | ଚାବା | ଥାଳି | ଜାଞ୍ଜଣି |
| କରେଇ | ଚାବୁଲ୍ଲ | ଗରା | ଗୁରା |
| ଲୋଟା | ମୂଡ଼ା | ମାଠିଆ | ଟେକ |

| ଓଡ଼ିଆ | କନ୍ଧ (କୁଇ) | ଓଡ଼ିଆ | କନ୍ଧ (କୁଇ) |
|---|---|---|---|
| ଚନ୍ଦନ | କୁଡ଼େ | ଗୁଆକାଠ | କାକାଙ୍ଗ |
| ଚଟୁ | ଡୁଆ | ଶିଳ | ବାଡ଼ |
| ଚରକାଖି | କୁସାଆ | ଲୁଣ | ସାରୁ |
| ତେଲ | ନୟୁ | ଦୁଧ | ପାଡ଼ୁ |
| ଛେନା | ଛେନା | ଖଇ | ଖଇ |
| ମହୁ | ପୁକ | ଶସ୍ୟ | ଡାସା |
| ଫଳ | ପଲ | ମାଂସ | ଭଙ୍ଗା |
| ପଶୁ | ପଶୁ | ସାପ | ସ୍ରାସୁ |
| ମାଙ୍କଡ଼ | ମାକାଡ଼ | ମିଠା | ସେମ୍ବା |
| ଖଟା | ସ୍ରାଃପା | ପିଠା | ପଡା |
| ବାଗ | ବଷ | ଲୁଣିଆ | ସାରୁ |
| ପିକା | କାହେଲ | ଧୂଆଁ ପତ୍ର | ଦୁଆଆକା |
| ଗଞ୍ଜେଇ | ଗାଞ୍ଜେ | ଅଫିମ | ଆପୁ |
| ମଦ | କାଲୁ | ମହୁଲ ମଦ | ଇରପି କାଲୁ |
| ଖଜୁରି ମଦ | ଗାଜୁରି କାଲୁ | ରନ୍ଧା ମଦ | ବାଜା କାଲୁ |
| ଦୋକାନ ମଦ | ଦୂକାନ କାଲୁ | ପିନ୍ଧା ଲୁଗା | ଠାଠା ସିନ୍ଧ୍ରା |
| କନା | ବଣାଆ | କୌପୁନ | ଗାନ୍ଧ |
| ପଗଡ଼ି | ପାଗ | ଛତା | ସାତା |
| ଟୋପି | ଟୁପି | ମାଳି | ପଟେକା |
| ଫୁଲହାର | ପଙ୍ଗ କାଡ଼ | ମୁଦ୍ର | ମୁଦ୍ର |
| କାନର ମୁଦ୍ର | ମୁଙ୍ଗେଲି ମୁଦ୍ର | ହାତର କାଚ | କାଗୁଡାର ଲାଂସ |
| ହାତର ଖଡ଼ୁ | କାଗୁଡାର ବାଲା | ଧାନ | କୁଡ଼ଙ୍ଗା |
| ଚାଉଳ | ପ୍ରାଙ୍ଗା | ସରୁ ଚାଉଳ | କଗାଇ ପ୍ରାଙ୍ଗା |
| ମୋଟା ଚାଉଳ | ରଠା ପ୍ରାଙ୍ଗା | ମାଣ୍ଡିଆ | ଡେଡ଼ |
| ସୁଆଁ | ପଠା | ବଡ ବାପା | ବଡୁ |
| ବଡ ମା | ବଡ଼ାଇ | ମାମୁଁ | ମାମା |

| ଓଡ଼ିଆ | କନ୍ଧ (କୁଇ) | ଓଡ଼ିଆ | କନ୍ଧ (କୁଇ) |
|---|---|---|---|
| ମାମୁଁ ଝିଅଭଉଣୀ | ମି୍ରଗାଲ | ଶଳା | ମିଷୁ |
| ଶାଳୀ | ଶାଆଳୀ | ସ୍ୱାମୀ | ମେଡ୍ରୁ ହେଞ୍ଜୁ |
| ସ୍ତ୍ରୀ | ଅସାମାଇଁ | ଶଶୁର | ଶଶ୍ରୁ |
| ଶାଶୁ | ଶାଶ | ସମୁଧି | ସମୁଧି ଓ ସମାଦୁଣୀ |
| ନାଣ୍ଡ | ନାଣ୍ଡି | ବର | ବ୍ରୁଡ଼ |
| କନ୍ୟା | ମ୍ରାଜ | ଘରଯୋଇଁଆ | ଗାଟ୍ସିଭ |
| ବିବାହ | ଠାଞ୍ଜିତେଞ୍ଜୁ | କନ୍ୟା ସୁନା | ମ୍ରାଉଦାଇଁ ଦନ |
| କଥା | କାଟା | ଗୁଳି | ଚାକା |
| ଶୋଇବା | ଡମୁବା ସୁଙ୍କୁମୁଁ | ସାପନ | କଡ଼୍ଞା |
| ଡାକ | ଅରୁମୁ | ବଡ଼ପାଟି | ଦେହ ସୁଡ଼ା |
| ଭୋକ | ସାକ | ଶୋଷ | ଏଷ୍କି |
| ମଦ | ଶୁସୁକାନାକା | ଖାଦ୍ୟ | ଏଜୁ, ପାଲ୍ |
| ପାଗସ୍ତୁ | ସିର | କାର୍ଯ୍ୟ | କାମା |
| ଶକ୍ତି | ଡାଂଠା | ମୂର୍ଚ୍ଛା | ଚେତପେନା |
| ଶେଷ | ବହିତେ | ଉଠା | ନଙ୍ଗାମୁ |
| ବସା | କକୁମୁ | ଦୌଡ଼ | ପିଞ୍ଜାମୁଁ |
| ଡିଆଁ | ଡେଗାମୁ | କ୍ଲାନ୍ତ | ନମେର |
| ହସ | କାପୁକା | କାନ୍ଦ | ଡବା |
| ଭଲ | ନେଗି | ମନ୍ଦ | ମାଡ଼ୁ |
| ସୁଖ | ନେକାଡ଼ | ଦୁଃଖ | ଦୁକ |
| ଆନନ୍ଦ | ନେଗି | ଡର | ଆକ୍ସି |
| ଲାଜ | ଲଜା | ସ୍ନେହ, ପ୍ରେମ | ଶାନ୍ତ ଲକୁ |
| ଭୁଲ | ବାଣା | ଦାନ | ଦାନ |
| ହଜିବା | ମ୍ରାଙ୍ଗିତେ | ଗର୍ଭ | ସିଆଣି |
| ଜନ୍ମ | ଗାଡ଼, ଗ୍ରାସ୍ | ରୋଗ | ରୁଗ |
| ଜୟ | ପ୍ରଃପା ମୁଡେରୁ | ଗନ୍ଧମ | ଗନ୍ଧମ |

| ଓଡ଼ିଆ | କନ୍ଧ (କୁଇ) | ଓଡ଼ିଆ | କନ୍ଧ (କୁଇ) |
|---|---|---|---|
| ବନ୍ଧ | କାଡ଼ଲକା | ମୁଗ | ମୁଗୁକା |
| ହରଡ଼ | କଙ୍ଗା | ଅଲସି | ଲାହ୍ୱା |
| ଜଡ଼ା | ଗାବାଙ୍ଗା | ମସୁର | ମୁଣ୍ଡ୍ରୀ |
| ଆଖୁ | ଆକୁ | ହଳଦି | ସିଙ୍ଗାଙ୍ଗ |
| ଲଙ୍କାମରିଚ | ପିଡକାଉ | ପିଆଜ | ପିଆଜ |
| ରସୁଣ | ଲେସୁଣୀ | ମକା | ଜଏଲ |
| ସୋରିଷ | ସରସ୍ | ଝୁଡ଼ୁଙ୍ଗ | ଜୁଡ଼ୁଙ୍ଗା |
| ଶିମ୍ବ | ଶାଇକାଙ୍ଗା | ଜମି | କେତା, ନେଡ଼ା |
| ବଳଦ | ପାଙ୍ଗା | କଆଁଶ | ବାଡ଼ା |
| ମାଟି | ବସ୍ରା | ବାଲି | ବାଲଅ |
| ଖତ | କଠ | ଉଠାଣି | ଏକାସି |
| ଟୋକା | ଡେଟେକଲି | ପଥର | ବାଡ଼ି |
| ପର୍ବତ | ସରୁ | ନଈ | ଜଡ଼ି |
| ପାଣି | ସିର | ଚଷ | ଚାସା |
| | | ହଳ କାମ | ସେରୁ କାମା |
| ଲଙ୍ଗଳ | ନାଙ୍ଗେଲି | ମଇ | ପାଟା |
| ଦା | କେଲେ | କୋଡ଼ି | ସ୍ପେଣୀ |
| ଶାବଳ | ଶାବାଲି | ଗଦା | ଗଦା |
| ଧାନ ଗଛ | କୁଡ଼ିଙ୍ଗା | ପାଳ | ପିରି |
| ଖଳା | କ୍ଲାହ୍ୱି | ପାଳ ଗଦା | ପିରିଗଦା |
| ଘାଡ଼ି | ଡାଡ଼ି | ଗଛ | ମ୍ରାହ୍ୱାନୁ |
| ଲଠା | ଗସା | ଘାସ | ସଲା |
| ବାଉଁଶ | ମାଣିଙ୍ଗା | ପତ୍ର | ଆକା |
| ଡାଳ | ଗପୁକା | ଚେର | ସିରିକା |
| ମୂଳ | ରୁମ୍ବି | କଢ଼ | ମଡ଼ି |
| ଫୁଲ | ପୁଜୁ | ଫଳ | ପଅଲ |
| ମଞ୍ଜି | ପେଡ଼େକା ବା ପେଡ଼୍କ | ଗୁଳି | ପାଣ୍ଡ୍ରା |

| ଓଡ଼ିଆ | କନ୍ଧ (କୁଇ) | ଓଡ଼ିଆ | କନ୍ଧ (କୁଇ) |
|---|---|---|---|
| ଘର | ଇଡ୍ଡୁ | ପାହାଚ | ଢେଙ୍ଗାଣି |
| ପିଣ୍ଡା | ପିଣ୍ଡୁଲ | ଚଳ | ନେଡ୍ଡେଂ |
| କାନ୍ଥ | କୁଡ୍ଡୁ | ଚୂଳ | ଆଞ୍ଜାଣି |
| ଛଣ | ବଗାକା | ଝରକା | ଜରକ |
| ଚକ | ରୁଷା, ବାଡ଼ | କୁଲ | ସେଶି |
| ଅଳିଆ | ସପ୍ରା | ଗୁଞ୍ଜଣୀ | ସେପେସ୍ |
| ବାଉଁଶିଆ | ମାଣିଙ୍ଗା | ପସରା ଗୁଣ୍ଡୁଡ଼ | ଅଠା ସାଙ୍ଗ୍ରା |
| ଟୋକେଇ | ବୁର୍କି | ଶିକା | ଶିକା |
| ଝର | କାଶା | ବାକ୍ସ | ପେଡ଼ |
| ଅଖା | ବସ୍ତା | ମୁଣି | ମଣୀ |
| ପିଢା | କଠଅ | ଖଟ | କାଟେ |
| ଶେଯ | ଶେଯ | ଢକଆ | ମୁସୁଲ |
| ମଶିଣା | ମାସୁଣି | କରସିନ ତେଲ | କରସିନ ନଯୁ |
| ବଛି | ବଛି | ଧାପାଳ | ଧାପାବଳୀ |
| କଣ୍ଟା | ସାପ୍‌କା | ଲୁହା | ଲହା |
| ଟିଣ | ଡାବାଲ | ଖୁର | ସିନେ |
| କୁଞ୍ଚି | ଶିଣା | ଦିଆସିଲ | ଡାନସାକଙ୍ଗା |
| ଧମାଡ଼ି | ଭଦଣି | ପଇସା | ପଇସି |
| ଟଙ୍କା | ଟାକା | ମାଣ୍ଡିଆ ଯାଉ | ଡେଡ଼ ଯାଉ |
| ମାଣ୍ଡିଆ ଭାତ | ଡେଡ଼ ପାଲ | ନମ୍ବ | ନମ୍ବ |
| ତେନ୍ତୁଳ | ନେଡ଼ | ଆମ୍ବଠାକୁଆ | ମାହାତାହ୍ନକା |
| ପଶୁ | ପଶୁ | ପକ୍ଷୀ | ପଠାଙ୍ଗା |
| ସାପ | ସ୍ରାସୁ | କୁମ୍ଭୀର | ମାଗାର |
| ମାଛ | ମିନୁକା | କଇଁଛ | ସେମ୍ବି |
| ବେଙ୍ଗ | ପାନା | ପୋକ | ପିକ୍‌କା |
| କଙ୍କଡ଼ା | ଜାନା | ଗାଈ | ଢଣ୍ଡ୍ରାକଡ଼ |
| ବାହୁଡ଼ି | ଡ୍ରାଡ଼ୁ | ବଳଦ | ବାଲ୍‌ଦାକଡ଼ |

| ଓଡ଼ିଆ | କନ୍ଧ (କୁଇ) | ଓଡ଼ିଆ | କନ୍ଧ (କୁଇ) |
|---|---|---|---|
| କଣ୍ଡା | ସାପୁ | ଗଜା | କଣା |
| ରସ | ରସ | କାଠ | ବେସୁକା |
| ଶାଗ | କୁସା | କଞ୍ଚା | ସିଡ଼ାର |
| ଶୁଖିଲା | ବାସାନେ | ପାଚିଲା | ମାଜାନେ |
| ସଢ଼ା | ଶ୍ରୀଆନେ | ଆମ୍ବ | ପିଉ୍ଆ, ମାହାଆ |
| ଆମ୍ବକସି | କଡ଼ଗାଇ ପିଡ୍ଆ | ପଣସ | ପଣସି |
| କାଗେଜ | ଲେମ୍ବୁ | କମଳା | କମଳା |
| ଆତ | ବଲଡ଼ି | ଜାମୁ | ଲଣ୍ଡ୍ରୁ |
| ପିଜୁଳି | ମୁଆଁ | ନଡ଼ିଆ | ନଡ଼ିଆ |
| ଶିମ୍ବ | ସାଇଁଙ୍ଗା | କଖାରୁ | ପୁଡ୍ରୁ |
| କାକୁଡ଼ି | ମୁଣ୍ଡୁରୁ | ବିଲାତି ଆଳୁ | ଆଳୁ |
| ଖମ୍ବ ଆଳୁ | ଗାଣ୍ଡିକୁନା | ସଜନା | ମୁନଗା |
| ପାଣିକଖାରୁ | ସିରଙ୍ଗି ପୁଡ୍ରୀ | ବିଲାତି ବାଇଗଣ | ଟମାଟି |
| କଲରା | କାରେ | ଷଣ୍ଢ | ଷଣ୍ଢ କଡ଼ି |
| | | ମଇଁଷି | କରୁକା |
| ଛେଳି | ଅଡ଼ା | ମେଣ୍ଢା | ମେସ୍ତ |
| ଘୁଷୁରି | ପାଜି | ଗଧ | ଗଦ |
| ଘୋଡ଼ା | ଗଡ଼ା | ହାତି | ଆଡି |
| କୁକୁର | ନାକୁଡ଼ି | ବିଲେଇ | ମେଅାଁ |
| କଣ୍ଟାସ | ବାଅଲି | ମାଙ୍କଡ଼ | ମୁନ୍ଦାରା |
| ହରିଣ | ସିଡାଲି | ସମ୍ବର | ମାଜୁ |
| ବାଘ | କୁଡ଼ାଣ୍ଡି | ଗଧିଆ | କୁଲିଆ ବାଂ ବାଅଲି |
| କୁମ୍ଭୀର | କୁଷୁ | ଠେକୁଆ | ମଡ଼ାଉ |
| ଭାଲୁ | ଅଲି | ବିଲୁଆ | କୁଲିଆ |
| ହସିବା | କପ୍କା | ଜାଣିବା | ପୁଞ୍ଜା ବା ପୁନାଶୁ |

| ଓଡ଼ିଆ | (କନ୍ଧ କୁଇ) | ଓଡ଼ିଆ | (କନ୍ଧ କୁଇ) |
|---|---|---|---|
| ଶୁଣିବା | ବେନାଷୁ | କରିବା | ଗିନାଶୁ |
| ନ କରିବା | କୁନଗିବା | ନେବା | ଅନା |
| ପିଇବା | ଉ୍ନାସୁ | ଶୋଇବା | ଓପା, ଶୁଞ୍ଜି |
| ହାଣିବା | କାଚ୍ଚାଟୁ | ଗୁଳିବା | ଡାକାଠୁ |
| ଧରିବା | ଆହାଦୁ | ଗୁଡ଼ିବା | ପିହୁଦ୍ |
| କହିବା | ବେସୁମୁ | ରଖିବା | ଇଟାଟୁ |
| ଲେଖିବା | ଲେକା | କାମୁଡ଼ିବା | କାସା |
| ଉଠିବା | ନିଙ୍ଗା | ବୁଡ଼ିବା | କଡୁ ତେ<br>ବା ଲୁମ୍ବ ତେ |
| ନାଚିବା | ଏନ୍ଦା | ହାଲିବା | ଦୁକେରି |
| ଖାଇବା | ଉନା | ଦେଖିବା | ମେହେନା |
| ଶୁଙ୍ଘିବା | ମୁଞ୍ଜା | ପିଇବା | ଉନା |
| କହିବା | ବେସନା | ଓରିବା | ଆଙ୍କା |
| ବାଗିବା | ବାଗ | କାନ୍ଧିବା | ଉବା |
| ବସିବା | କକ୍ନା | ପଢ଼ିବା | ହକାନା |
| କାଟିବା | ସଟକନା, ହପକନା | ଝୁଲିବା | ଦ୍ରୁଙ୍ଗିନା |
| ଖେଳିବା | କାହ୍ନା | ହଜିବା | ମ୍ରାଙ୍ଗା |
| ଦର | | ବ୍ରୁଢ଼ି | |
| ଶାଳ | | ଜାଗି | |
| ପିଆଶାଳ | | ନଜା | |
| ବାଇଗଣ | | ବାଙ୍ଗେଡ଼ି | |
| ଅମୃତଭଣ୍ଡା | | ଅମ୍ବରତ | |
| ତୁ ଟଙ୍କା ପାଇବୁ | | ଇନ ଟାକାଙ୍ଗା ପାଣ୍ଡି | |
| ମତେ ଜଣାନାହିଁ | | ଅନୁ ପୁନୁମ୍ବାଏ | |
| ବାଘ ଗର୍ଜନ କଲା | | କଡ଼ାଣ୍ଡି ରୁମ୍ବାଇନେ | |
| ଦରକାର ଅଛି | | କାମ ମାନେ | |
| ମେଘ ବରଷୁଛି | | ମୁଡେଙ୍ଗି ଆଇନେ | |

# ଶ୍ରୀ ଜଗନ୍ନାଥ ଓ ଆଦିବାସୀ

ଓଡ଼ିଶା ଗୋଟିଏ ଆଦିବାସୀବହୁଳ ରାଜ୍ୟ । ସମୁଦାୟ ଜନସଂଖ୍ୟା ମଧ୍ୟରୁ ଆଦିବାସୀ ହେଉଛନ୍ତି—ଶତକଡ଼ା ୨୫ ଭାଗ । ଏହି ଆଦିବାସୀ ସମ୍ପ୍ରଦାୟ ମଧ୍ୟରେ ୬୨ ପ୍ରକାର ଉପଜାତି ଓ ୩୨ ପ୍ରକାର ଉପଭାଷା ଅଛି । ସେ ଉପଭାଷା ମଧ୍ୟରୁ ସଉରା ଗୋଟିଏ । ଆମ୍ଭେମାନେ ଯେତେବେଳେ ଜୟ ଜଗନ୍ନାଥ କହୁଁ ସେତେବେଳେ ଏ ସଉରା ଭାଇମାନେ 'ଜୟ ଜନାଇଲେ' ବୋଲି କହନ୍ତି ।

ଓଡ଼ିଶାର ସଂସ୍କୃତି ହେଉଛି ଜଗନ୍ନାଥ ସଂସ୍କୃତି । ଏ ସଂସ୍କୃତି ଆଦିବାସୀମାନଙ୍କର କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଦ୍ୟାପତି ବ୍ରାହ୍ମଣ ଶବର ରାଜା ବିଶ୍ୱାବସୁଙ୍କ କନ୍ୟା ଲଳିତାଙ୍କୁ ବିବାହ କରି ନୀଳମାଧବଙ୍କୁ ନେଇ ଆସିଥିଲେ । ସେହି ନୀଳମାଧବ ଆଜି ଶ୍ରୀ ଜଗନ୍ନାଥ ରୂପରେ ପୁରୁଷୋତ୍ତମ କ୍ଷେତ୍ରରେ ପୂଜା ପାଉଛନ୍ତି ।

ଶ୍ରୀ ଜଗନ୍ନାଥ ପତିତ, ଦଳିତ, ଅବହେଳିତ ଲୋକମାନଙ୍କ ପାଇଁ ରଥଯାତ୍ରାରେ ଶ୍ରୀମନ୍ଦିରରୁ ଗୁଣ୍ଡିଚା ଘରକୁ ଆସନ୍ତି । ଏହିସମୟରେ ଜାତି ଧର୍ମ ନିର୍ବିଶେଷରେ ସମସ୍ତେ ଦର୍ଶନ ଲାଭ କରନ୍ତି । ଆଦିବାସୀମାନଙ୍କ ବଂଶଧର ଦଇତାପତି ଭାବରେ ସେବା ପୂଜା କରନ୍ତି ।

ପୁରୀର ଗଜପତି ମହାରାଜା ରଥରେ ଛେରା ପହଁରା କାର୍ଯ୍ୟ କରନ୍ତି । ଏହି ଛେରା ପହଁରା ଅର୍ଥାତ୍ ଝାଡୁଦେବା ଚଣ୍ଡାଳର କାମ ; କିନ୍ତୁ ଏଥିରେ ବିଶେଷତ୍ୱ ଏତିକି ରହିଛି ଯେ, ଶ୍ରୀ ଜଗନ୍ନାଥଙ୍କ ପାଖରେ ସମସ୍ତେ ସମାନ । ରାଜା ପ୍ରଜାଙ୍କ ମଧ୍ୟରେ ପାର୍ଥକ୍ୟ ନାହିଁ ।

ଆଦିବାସୀମାନେ ଦାରୁ ପୂଜା ଅର୍ଥାତ୍ କାଠରେ ବିଗ୍ରହ କରି ପୂଜା କରନ୍ତି । ନୀଳମାଧବଙ୍କଠାରୁ ଶ୍ରୀମନ୍ଦିରରେ ଶ୍ରୀ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପୂଜା ଆରମ୍ଭ ହୋଇ ଆଜି ଓଡ଼ିଶା ବାହାରେ ବିଦେଶରେ ମଧ୍ୟ ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା ଆରମ୍ଭ ହୋଇଗଲାଣି । ବହୁତ ବିଦେଶୀମାନେ 'ଜୟ ଜଗନ୍ନାଥ'' ସଂକୀର୍ତ୍ତନରେ ନିଜକୁ ହଜାଇଦେଲେଣି ।

※ ※

ଏ ସଂସ୍କୃତିଦ୍ୱାରା ଧୀରେ ଧୀରେ ମଧ୍ୟରେ ସ୍ନେହ ଶ୍ରଦ୍ଧା ବଢ଼ି ଚାଲିଛି । ଜାତିଭେଦ ଉଠିଯାଉଛି । ଅଭଡ଼ା ଭୋଜନ କରି ପରମ ଶାନ୍ତି ପାଉଛନ୍ତି ।

ଏହାର ମୂଳରେ ଆଦିବାସୀମାନଙ୍କର ଅବଦାନ ରହିଛି । ଆଜି ଏହି ପବିତ୍ର ରଥଯାତ୍ରାରେ ଜଗତର ନାଥ ଶ୍ରୀ ଜଗନ୍ନାଥ ପତିତ ଜନଙ୍କୁ ଦୁଃଖ ଦାରିଦ୍ର୍ୟରୁ ଉଦ୍ଧାର କରନ୍ତୁ ।

ଜଗନ୍ନାଥ ସ୍ୱାମୀ ନୟନ ପଥ ଗାମୀ ଭବ ତୁମେ ।

---

# ଶବର

ଶ୍ରୀ ନାରାୟଣ ପ୍ରସାଦ ସିଂହ

ବଣରେ ଜନମ ଜାତି ମୋ ଶବର ଶିକାର ବେଉସା ମୋର
ନାହିଁ ଡର ଭୟ ଦେଖେ କାହାକୁ କାନ୍ଧେ ଥିଲେ ଧନୁଶର ॥
ଖାଏ ବଣ ଫଳ ବଡ଼ ସୁଆଦ ଲୋ
ପିଏ ଝରଣାର ଜଳ
ଗିରିଷମ ଶୀତ ବାଧେନା ଦେହକୁ
ପିନ୍ଧେ ଗଛ ବଳକଳ
ଡାଳ ପତରରେ ଶିଆଳି ଲଟାରେ ବାନ୍ଧିଛି ମୋହର ଘର ॥
ବରଷା କାଳରେ ପୁଚ୍ଛ ଟେକି ନାଚେ
ମୟୂର ନାଚେ ମୋ ହିଆ
ଡାହୁକ ଡାକେ ଲୋ କୋଇଲି ଡାକେ ଲୋ
ବହିଲେ ଦକ୍ଷିଣା ବାଆ
ମାଦଳ ବଜାଇ ସୁଖେ ଗୀତ ଗାଇ ନାଚ ରାତି ହୁଏ ଭୋର ॥
କାଠି ପଂଜୁରୀରେ ଶବରୀ ମୋହରୀ ପୋଷିଥାଏ ଶୁଆ ସାରୀ
ସକାଳ ସଞ୍ଜରେ ଡାକ ଶୁଭୁଥାଏ ରାମ ରାମ ହରି ହରି
ଏ ପାହାଡ଼ ବଣ ଏ ପାଣି ପବନ ମୋର ଅତି ଆପଣାର ॥

---

# ବହୁ ଧର୍ମ, ଏକ ଜାତି

ଆମେ ଏଥିପାଇଁ ଗର୍ବ ଅନୁଭବ କରିବା ଉଚିତ ।

ବିବିଧତା ମଧ୍ୟରେ ଐକ୍ୟ ଯୋଗୁଁ, ଭାରତ ବିଶ୍ୱ ଦରବାରରେ ସଦାସର୍ବଦା ସମ୍ମାନ ଲାଭ କରି ଆସିଛି । ଏହି ଦେଶରେ ପ୍ରତ୍ୟେକ ଧର୍ମମତର ବହୁସଂଖ୍ୟକ ଲୋକ ବାସ କରନ୍ତି—ଏବଂ ଆମର ସଂବିଧାନରେ ସମସ୍ତଙ୍କ ପାଇଁ ସମାନ ଅଧିକାର ଓ ବ୍ୟକ୍ତିଗତ ମର୍ଯ୍ୟାଦାର ଗ୍ୟାରେଣ୍ଟି ଦିଆଯାଇଛି ।

**ଧର୍ମ ହେଉଛି ଏକ ପବିତ୍ର ବିଷୟ ଏବଂ ଏଥିରୁ ଫାଇଦା ଉଠାଇବା ପାଇଁ କାହାକୁ ପ୍ରଶ୍ରୟ ଦିଆଯିବା ଉଚିତ ନୁହେଁ ।**

ଆମ ଦେଶର ଅଧିକାଂଶ ଭଦ୍ର ନାଗରିକ ଦୀର୍ଘକାଳ ହେଲା ବିଭ୍ରାନ୍ତ, ଉତ୍ତେଜନା ଓ ସାଂପ୍ରଦାୟିକ ହିଂସାକାଣ୍ଡ ଭିଆଉଥିବା ଲୋକମାନଙ୍କୁ ନୀରବରେ ସହ୍ୟ କରି ଆସିଛନ୍ତି ।

ପ୍ରତ୍ୟେକ ଆଇନ ଶୃଙ୍ଖଳା ଭଙ୍ଗ ପରିସ୍ଥିତି ପାଇଁ ଆଇନ ମାନି ଚଳୁଥିବା ନାଗରିକମାନଙ୍କୁ ମୂଲ୍ୟ ଦେବାକୁ ପଡ଼ୁଛି । ଏହା ଫଳରେ ଅନେକ ପରିବାରରେ ଚୁଲି ଜଳୁନାହିଁ, ପିଲାଏ ପାଠ ପଢ଼ିପାରୁନାହାନ୍ତି, ମଜୁରିଆ ଓ ବ୍ୟବସାୟୀମାନେ ନିଜର ଜୀବିକା ଚଳାଇପାରୁନାହାନ୍ତି । ସାଧାରଣ ସଂପତ୍ତିକୁ ନଷ୍ଟ କରିଦିଆଯାଉଛି, ଯାହା ଫଳରେ ଆମ ସମସ୍ତଙ୍କର କ୍ଷତି ହେଉଛି ।

**ନିରୀହ ଲୋକେ କାହିଁକି ଦୁଃଖକଷ୍ଟ ଭୋଗିବେ ?**

ପ୍ରଧାନମନ୍ତ୍ରୀ ଏକଥା ପରିଷ୍କାର ଭାବେ ଜଣାଇଦେଇଛନ୍ତି ଯେ ସର୍ବଧର୍ମର ସମାନତାକୁ କ୍ଷୁଣ୍ଣ କଲଭଳି କୌଣସି ଉଦ୍ୟମ ବରଦାସ୍ତ କରାଯିବ ନାହିଁ । କ୍ଷମତାରେ ରହିଥିବା ବ୍ୟକ୍ତିବୃନ୍ଦ ନିଜର କର୍ତ୍ତବ୍ୟ ସୁଚାରୁରୂପେ ସଂପନ୍ନ କରିବାରେ ବିଫଳ ହେଲେ ସେମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ।

**ଆସନ୍ତୁ, ଶାନ୍ତି ଓ ସାଂପ୍ରଦାୟିକ ସଦ୍‌ଭାବକୁ ସୁଦୃଢ଼ କରିବା ଦିଗରେ ଆମେ ସମସ୍ତେ ଉଦ୍ୟମ କରିବା ।**

**ସାଂପ୍ରଦାୟିକ ସଦ୍‌ଭାବ କ୍ଷୁଣ୍ଣକାରୀ**
**ସମାଜ ବିରୋଧୀ ଶକ୍ତିଗୁଡ଼ିକ ବିରୁଦ୍ଧରେ ସଂଗ୍ରାମ ଚଳାନ୍ତୁ ।**

davp 79/67

# ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ନିମନ୍ତେ ସୁବିଧା ସୁଯୋଗ

- ଶିକ୍ଷା କ୍ଷେତ୍ରରେ ଅନଗ୍ରସର ୩୪ଟି ବ୍ଲକ୍‌ରେ ୩୨,୦୦୦ ପିଲାଙ୍କୁ ଶିକ୍ଷା ଦେବା ନିମନ୍ତେ ୧,୮୫୫ଟି ପ୍ରାଥମିକ ସ୍କୁଲ୍ ଖୋଲାଯାଇଛି ।
- ଆଦିବାସୀ ଅଞ୍ଚଳରେ ୨୫ଟି ଅସଂପୂର୍ଣ୍ଣ ଛାତ୍ରାବାସର ନିର୍ମାଣ କାର୍ଯ୍ୟ ଶେଷ ହୋଇଯାଇଛି ଏବଂ ୨୯ଟି ନୂତନ ଛାତ୍ରାବାସର ନିର୍ମାଣ କାର୍ଯ୍ୟ ଶେଷ ହେବାକୁ ଯାଉଛି ।
- ପ୍ରଥମ ଥର ପାଇଁ ଛାତ୍ର ତଥା ଶିକ୍ଷକମାନଙ୍କୁ ଯୋଗ୍ୟତା ପୁରସ୍କାର ଓ ନଗଦ ଅର୍ଥ ଆକାରରେ ସ୍ୱତନ୍ତ୍ର ଆର୍ଥିକ ପ୍ରୋତ୍ସାହନ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।
- ଚାକିରି ଅନ୍ୱେଷଣ କରୁଥିବା ତଫସିଲଭୁକ୍ତଜାତି ଓ ତଫସିଲଭୁକ୍ତ ସଂପ୍ରଦାୟର ପ୍ରାର୍ଥୀମାନଙ୍କ ପାଇଁ ରାଜ୍ୟ ସ୍ତରରେ ସ୍ୱତନ୍ତ୍ର କର୍ମ ନିଯୋଗ ସଂସ୍ଥା ଖୋଲାଯାଇଛି ।

ଉଡ଼ିଶାର ସୂଚନା ଓ ଲୋକସଂପର୍କ ବିଭାଗ

( ଉଡ଼ିଶା ସରକାର )

# ଆଦିବାସୀ ପରଜା ସଂସ୍କୃତି

ପରଜା ଓଡ଼ିଶାର ଆଦିବାସୀମାନଙ୍କ ମଧ୍ୟରେ ଅନ୍ୟତମ ଆଦିମ ଉପଜାତି ଏବଂ ଏକ ମୁଖ୍ୟ ସମ୍ପ୍ରଦାୟ । ସେମାନଙ୍କର ବାସସ୍ଥାନ, ଚାଲିଚଳନ ଓ ସଂସ୍କୃତି ପ୍ରଭୃତିରେ ଅନ୍ୟାନ୍ୟ ଆଦିବାସୀ ଉପଜାତିର ଲୋକଙ୍କ ଅପେକ୍ଷା କେତେକ ସାମାନ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଆଦିବାସୀ ପରଜାମାନଙ୍କର ବସ୍ତ୍ର ପରିଧାନ ତଥା ସ୍ତ୍ରୀ ଲୋକମାନଙ୍କ ଅଳଙ୍କାର ଧାରଣ ପ୍ରତି ଲକ୍ଷ୍ୟ କଲେ ସେମାନଙ୍କ ଭିତରେ ଥିବା ସ୍ୱାତନ୍ତ୍ର୍ୟ ପ୍ରକଟିତ ହୁଏ । ସେମାନେ ସାଧାରଣ ଲୋକଙ୍କଠାରୁ ଅଲଗା ରହିବାକୁ ପସନ୍ଦ କରନ୍ତି ଏବଂ ଅନ୍ୟମାନଙ୍କୁ ଦେଖିଲେ ସାଧାରଣତଃ ଦୂରେଇ ଯାଆନ୍ତି । ସାଧାରଣ ଲୋକଙ୍କୁ ଦେଖିଲେ ସେମାନେ ସଙ୍କୁଚିତ ଅନୁଭବ କରନ୍ତି ଏବଂ ସ୍ୱେଚ୍ଛାକୃତଭାବେ କେବେହେଲେ ବାହାର ଲୋକଙ୍କ ସହିତ କଥାବାର୍ତ୍ତା କରନ୍ତି ନାହିଁ । ସେମାନଙ୍କ ବାସଗୃହ ନିର୍ମାଣ ପ୍ରଣାଳୀ ପ୍ରତି ଲକ୍ଷ୍ୟ କଲେ ଦେଖାଯାଏ ଯେ ସ୍ରୋଟରୁ ବଡ଼ ପର୍ଯ୍ୟନ୍ତ ଗୋଟିଏ ଧରଣ (design)ର ଘର ସେମାନେ ନିର୍ମାଣ କରିଥାନ୍ତି । ପ୍ରତ୍ୟେକ ଲୋକର ଘର ଅଲଗା ଅଲଗା ରହିଥାଏଁ ଏବଂ ସେମାନଙ୍କ ଘରେ କେବଳ ଗୋଟିଏ ମାତ୍ର ପ୍ରବେଶ ଦ୍ୱାର (entrance) ଥାଏ । ପରଜାମାନେ ବାଡ଼ପଟେ ପ୍ରସ୍ଥାନପଥ (exit) ରଖି ନ ଥାନ୍ତି । ସେମାନେ ଘର ଭିତରେ ଚୁଲି, ଧାନଗାଡ଼ିଆ (ଶସ୍ୟାଗାର), ଦେବତାଗୃହ (ଠାକୁର ଘର) ଏବଂ ଶୟନକକ୍ଷ କରିଥାନ୍ତି । ଆବାଳ-ବୃଦ୍ଧ-ବନିତା ସମସ୍ତେ ଘର ଭିତରେ ଭୂଇଁ ଉପରେ ଶୋଇବା ଲକ୍ଷ୍ୟ କରାଯାଏ । ସ୍ଥାନାଭାବଯୋଗୁଁ ସେମାନେ କ୍ୱଚିତ୍ ଖଟ ବ୍ୟବହାର କରିଥାନ୍ତି । ଆଦିବାସୀ ପରଜାମାନଙ୍କର ବସ୍ତ୍ର ପରିଧାନ ପରିପାଟି ତଥା ଅଳଙ୍କାର ଧାରଣ ପ୍ରତି ଲକ୍ଷ୍ୟ କଲେ ଯେ କୌଣସି ଅଚିହ୍ନା ଲୋକ ସେମାନଙ୍କୁ ସହଜରେ 'ପରଜା' ବୋଲି ଚିହ୍ନଟ କରିପାରିବେ ।

ଶିକ୍ଷାର ଅଭାବ ତଥା ବହୁ ଅନ୍ଧବିଶ୍ୱାସରେ ଜଡ଼ିତ ଥିଲେ ମଧ୍ୟ ଆଦିବାସୀ ପରଜା ସନ୍ତୁଷ୍ଟତା, ନିରଳସ ଓ ନିରାଡ଼ମ୍ବର ଜୀବନଯାପନ, କଠିନ ପରିଶ୍ରମ ଏବଂ ସୌଜନ୍ୟ ପ୍ରଦର୍ଶନ ପ୍ରତି କେବେହେଲେ ତ୍ରୁଟି କରନ୍ତି ନାହିଁ । ସ୍ଥଳ ବିଶେଷରେ ; 'ପରଜା' ମାନଙ୍କୁ ଆର୍ଥିକ ମାନଦଣ୍ଡ ଦୃଷ୍ଟିକୋଣରୁ ବିଚାର କରାଯାଇ 'ବଡ଼ ପରଜା' ଓ 'ସାନ ପରଜା' ବୋଲି କହନ୍ତି ।

ପ୍ରତ୍ୟେକ 'ପରଜା' ଗ୍ରାମରେ ଗୋଟିଏ ଲେଖାଏଁ 'ବେରଣମୁଣ୍ଡା' ଏବଂ 'ନିଶାଣମୁଣ୍ଡା' ଦେଖିବାକୁ ମିଳେ । ଗ୍ରାମ ମଝିରେ କେତେକ ଚକପଥର ସମାବେଶକୁ 'ବେରଣମୁଣ୍ଡା' କହନ୍ତି । ଏହାକୁ 'ପରଜା'ମାନେ 'ମାଣ୍ଡୁଦାଣ୍ଡି' ବୋଲି ମଧ୍ୟ କହିଥାନ୍ତି । ଗ୍ରାମ ମୁଖିଆଙ୍କ ଘର ଅଗଣା ତଥା ଦୁଇ ସାହି ମଧ୍ୟରେ ଏହି 'ବେରଣମୁଣ୍ଡା' ଦେଖିବାକୁ ମିଳେ । ଗ୍ରାମର ଭଲ ମନ୍ଦ ଓ ପଞ୍ଚପଞ୍ଚାୟତିର ନିଷ୍ପତ୍ତି ପାଇଁ ପରଜାମାନେ ଏହି 'ବେରଣମୁଣ୍ଡା'-ଠାରେ ଠୁଳ ହୋଇଥାନ୍ତି । ସେହିପରି କେତେକ ଲମ୍ବା ଲମ୍ବା ପଥରର ପରିବେଷ୍ଟନୀ ମଧ୍ୟରେ କେତେକ ପଥରଦ୍ୱାରା ନିର୍ମିତ ବଖରାଟିଏ ନିର୍ମାଣ କରାଯାଇ ସେଥିରେ ଯେଉଁ 'ହୁଣ୍ଡି ଦେବତା'ଙ୍କ ପ୍ରତିଷ୍ଠା କରାଯାଇଥାଏ ତାକୁ 'ନିଶାଣୀମୁଣ୍ଡା' କୁହାଯାଏ । 'ପରଜା'ମାନଙ୍କର ଏହି 'ହୁଣ୍ଡିଦେବତା' ହେଉଛନ୍ତି ଗୋଟିଏ ମାଟିହାଣ୍ଡି ଓ ଲୁହାକାତି ଏବଂ ପରଜାଗ୍ରାମ ପ୍ରତିଷ୍ଠା ପୂର୍ବରୁ ସ୍ଥାପିତ ହୋଇଥିବା ଏକ ସ୍ଥାୟୀ ଲୁହାଖମ୍ବ । ସ୍ଥାୟୀ ଲୁହାଖମ୍ବଟିକୁ ଅପରିବର୍ତ୍ତନୀୟ ରଖାଯାଇ ମାଟିହାଣ୍ଡି ଓ କାତିକୁ ବର୍ଷରେ ଯେ କୌଣସି ତିନି ଥର, ଯଥା—ବନ୍ଦାପନାମାସ (ଶ୍ରାବଣ), କୌଣସି ଏକ ନୂଆଖିଆ ସମୟ କମ୍ବା ଚଇତପର୍ବର ଅବ୍ୟବହିତ ପୂର୍ବରୁ ପୂଜାପାଠ ସହକାରେ ପରିବର୍ତ୍ତନ କରାଇ ଦିଆଯାଏ ଏବଂ ଠିକ୍ ବର୍ଷକ ପରେ ସେଗୁଡ଼ିକ ପୁନଃ-ପରିବର୍ତ୍ତନ କରି ନୂଆ କଳସି ଓ କାତିଟିଏ 'ନିଶାଣୀମୁଣ୍ଡି'ରେ ସ୍ଥାପନ କରାଯାଏ । ବଳିପାଇଁ ଉଦ୍ଦିଷ୍ଟ ଯାବତୀୟ ପଶୁପକ୍ଷୀ ଯଥା—କୁକୁଡ଼ା, ଛେଳି ଓ ଘୁଷୁରି ପ୍ରଭୃତି ଉକ୍ତ କାତିଦ୍ୱାରା ଛେଦନ କରାଯାଇ 'ନିଶାଣୀ ମୁଣ୍ଡା'-ଠାରେ ପୂଜା କରାଯାଏ । ପ୍ରତିଟି ପରଜା ଗ୍ରାମରେ—ଧାଙ୍ଗଡ଼ୀ (ଯୁବତୀ) ଓ ଧାଙ୍ଗଡ଼ା (ଯୁବକ) ମାନଙ୍କ ପାଇଁ ଗୋଟିଏ ଲେଖାଏଁ 'ବାସାଘର' **(youth dormitors)** ରହିଥାଏ । 'ପରଜା' ଯୁବକ-ଯୁବତୀମାନେ ଉକ୍ତ 'ବେରଣମୁଣ୍ଡା'ଠାରେ ଅବାଧମିଳନର ସୁଯୋଗ ପାଇଥାନ୍ତି । ସନ୍ଧ୍ୟା

ସମୟରେ ଏହିଠାରେ ଯୁବକ-ଯୁବତୀମାନେ ଏକତ୍ର ହୋଇ 'ଘାଗାଗୀତ୍' (ପ୍ରତିଯୋଗିତାମୂଳକ ସଙ୍ଗୀତଚର୍ଚ୍ଚା) ମାଧ୍ୟମରେ ନିଜ ନିଜ ମଧ୍ୟରେ ଭାବ-ବିନିମୟ କରିଥାନ୍ତି । ଏହିଠାରେ ସେମାନେ ବିଭିନ୍ନ ରସପୂର୍ଣ୍ଣ ପ୍ରଣୟଗୀତ ଗାଇବା ସଙ୍ଗେ ସଙ୍ଗେ ନୃତ୍ୟ ପରିବେଷଣ କରିଥାନ୍ତି । ଏହି ପ୍ରକାରର ସାଂସ୍କୃତିକ କାର୍ଯ୍ୟକ୍ରମ ଭିତରେ ସଂଗଠିତ ହେଉଥିବା ହାର୍ଦ୍ଦିକତା ହିଁ ଏହି ଯୁବକ-ଯୁବତୀମାନଙ୍କର ମଧ୍ୟରେ ବୈବାହିକ ସମ୍ପର୍କ ସ୍ଥାପନର ସୁଯୋଗ ଆଣିଦିଏ । ଏହିଠାରେ ଦୀର୍ଘସମୟ ଧରି ନାଚଗୀତଦ୍ୱାରା କ୍ଲାନ୍ତି ଅନୁଭବ କଲେ ସେମାନେ ନିଜ ନିଜର 'ବାସାଘର'କୁ ପ୍ରତ୍ୟାବର୍ତ୍ତନ କରନ୍ତି । 'ପରଜା' ଯୁବକ ଯୁବତୀମାନେ ରାତିକାଳରେ ସ୍ୱ-ଗୃହକୁ କ୍ୱଚିତ୍ ଫେରିବା ଦେଖାଯାଏ ଯେହେତୁ ସେମାନେ 'ବାସାଘର'ଠାରେ ରାତି ଯାପନ କରିବା ପସନ୍ଦ କରନ୍ତି । ଅବଶ୍ୟ ଏହି 'ବାସାଘର' ଯୁବକ ଓ ଯୁବତୀମାନଙ୍କ ପାଇଁ ଭିନ୍ନ ଓ ପୃଥକ୍ ସ୍ଥାନରେ ଅବସ୍ଥିତ ।

ଆଦିବାସୀ ପରଜା ଗ୍ରାମର ଶାସନତାନ୍ତ୍ରିକ ମୁଖ୍ୟମାନେ ହେଲେ 'ଜାନି', 'ମୁଦୁଲି', 'ଚଲାଣ', 'ଦିଶାରି', 'ଗୁଣିଆ', 'ଗୁରୁମାଇଁ' ଏବଂ 'ଭାତନାୟକ' । ପରଜା ସମାଜରେ 'ଜାନି' ହେଉଛନ୍ତି ଗ୍ରାମର ମୁଖିଆ ଲୋକ ଏବଂ ପୂଜାସାମଗ୍ରୀର ତତ୍ତ୍ୱାବଧାରକ (Cuotodian) 'ମୁଦୁଲି' ହେଲେ ପରଜା ଗ୍ରାମର ଅନ୍ୟତମ ମୁଖିଆ ଯେ କି ଗ୍ରାମର ଭଲମନ୍ଦ ଓ ସୁଖଦୁଃଖର ତତ୍ତ୍ୱ ନେଇଥାଏ । ଏହି ଦୁଇବ୍ୟକ୍ତି ଗ୍ରାମର ଅତି ବିଶିଷ୍ଟ ବ୍ୟକ୍ତିରୂପେ ପରିଗଣିତ ହୋଇଥାନ୍ତି ଏବଂ ବଂଶପରଂପରା କ୍ରମେ ସେମାନେ ଏହି ଦାୟିତ୍ୱ ଗ୍ରହଣ କରିଥାନ୍ତି । 'ଜାନି' ଓ 'ମୁଦୁଲି'ଙ୍କ ନିର୍ଦ୍ଦେଶ ଗ୍ରାମବାସୀଙ୍କୁ ଶୁଣାଇ ଏବଂ ତାହାକୁ ଅନ୍ତରର ସହିତ ଗ୍ରହଣ କରି କାର୍ଯ୍ୟକାରୀ କରିବାକୁ ଯେଉଁ ବ୍ୟକ୍ତି ଗ୍ରାମବାସୀଙ୍କୁ ବାଧ୍ୟ କରିବା ଦାୟିତ୍ୱ ବହନ କରିଥାଏ ସେ ହେଲେ 'ଚଲାଣ' । ପରଜା ସମାଜରେ 'ଦିଶାରି'ଙ୍କର କାର୍ଯ୍ୟହେଲା ଶୁଭଲଗ୍ନାଦି ନିରୂପଣ କରିବା ଓ ନବଜାତ ଶିଶୁର ନାମକରଣ କରିବା । 'ଗୁଣିଆ' ମନ୍ତ୍ରପାଠ ଓ ଚେରମୂଳି ଔଷଧ ଦେଇ ଗ୍ରାମବାସୀଙ୍କୁ ରୋଗମୁକ୍ତ କରିବାକୁ ପ୍ରୟାସ କରିଥାଏ । 'ଗୁରୁମାଇଁ' ହେଲେ ଗ୍ରାମ୍ୟଦେବତାଙ୍କ ପୂଜକ ଏବଂ ଦୈବବାଣୀ ଓ ଗ୍ରାମର କୌଣସି ବ୍ୟକ୍ତି ବେମାର ପଡ଼ିଲେ ସୂକ୍ତପାଠ କରିବା ଦାୟିତ୍ୱ ସେ ବହନ କରିଥାନ୍ତି । ସାଧାରଣତଃ ଜଣେ ପରଜା

ସ୍ତ୍ରୀଲୋକ ଏହି 'ଗୁରୁମାଇଁ' ଦାୟିତ୍ୱ ବହନ କରଥାନ୍ତି । 'ଭାତନାୟକ' ପରଜା ସମାଜର ଅନ୍ୟତମ ବଶିଷ୍ଟ ବ୍ୟକ୍ତି । ପରଜା ସମାଜରେ କୌଣସି ଲୋକ ଗୋହତ୍ୟା କଲେ, ବାଘ କାମୁଡ଼ାରେ ଆହତ ବା ନହତ ହେଲେ, ବେମାରଦ୍ୱାରା ଦେହରେ ପୋକ ଲାଗିଲେ କମ୍ବା ଅସ୍ପୃଶ୍ୟ ଲୋକଦ୍ୱାରା ଆଘାତପ୍ରାପ୍ତ ହେଲେ ସମ୍ପୃକ୍ତ ବ୍ୟକ୍ତିକୁ ସମାଜରୁ ବହିଷ୍କୃତ କରଯିବାର ବଧି ପ୍ରଚଳତ ଅଛି । ଏପରସ୍ଥଳେ 'ଭାତନାୟକ' ସଂପୃକ୍ତ ବ୍ୟକ୍ତିର ପ୍ରାୟଶ୍ଚିତ କଲାପରେ ପୁନରାୟ ତାକୁ ପରଜା ଜାତିରେ ସାମିଲ୍ କରଥାଏ । ଏଥିଲାଗି ସମ୍ପୃକ୍ତ ବ୍ୟକ୍ତିକୁ ପୁନର୍ବାର ଜାତିରେ ସାମିଲ ହେବାପାଇଁ ଗୋଟିଏ ଘୁଷୁରି, ଗୋଟିଏ ଛେଳି, ତିନୋଟି କୁକୁଡ଼ା ଓ କିଛି ଟଙ୍କା ଏବଂ ଗ୍ରାମବାସୀଙ୍କ ଭୋଜଭାତପାଇଁ ଆବଶ୍ୟକ ପରମାଣର ଚାଉଳ ସମାଜକୁ ଦେବାକୁ ହୁଏ । ପ୍ରଚଳତ ପ୍ରଥା ଅନୁସାରେ 'ଭାତନାୟକ' ସମ୍ପୃକ୍ତ ବ୍ୟକ୍ତିଙ୍କୁ ଦୁଇ ନଦୀର ମିଳନସ୍ଥଳ ବା ଜଳାଧାରର ସଙ୍ଗମସ୍ଥଳକୁ ନେଇ ତାର ମୁଣ୍ଡକୁ ଲଣ୍ଡା କରଦଏ । ତା ପରେ ସେହି ବ୍ୟକ୍ତି ଉପରେ ଗୋବର ପାଣି ଛିଞ୍ଚି ଛିଞ୍ଚି ତାକୁ ନଦୀରେ ଗାଧୋଇ ଦେଇ ତା'ର ଜିହ୍ୱାରେ ସୁନାମୁଦର ଚେଙ୍କ ଦଏ । 'ଭାତନାୟକ' ସେହି ବ୍ୟକ୍ତିଠାରୁ ଖଣ୍ଡିଏ ନୂଆ ଲୁଗା, ପାଞ୍ଚ ଟଙ୍କା, ମାଣେ ଚାଉଳ ଓ ମାଣେ ମାଣ୍ଡିଆ ପାରଶ୍ରମିକ ସ୍ୱରୂପ ଆଦାୟ କର ଜାତିରୁ ବାସନ୍ଦ ହୋଇଥିବା ବ୍ୟକ୍ତିଦ୍ୱାରା ଭୋଜର ବ୍ୟବସ୍ଥା କରଥାଏ । ଏହି ଭୋଜି ରନ୍ଧା ହେବା ପରେ ସର୍ବପ୍ରଥମେ 'ଭାତନାୟକ' ପାକାନ୍ନ ଭୋଜନ କର ପରେ ଅନ୍ୟମାନଙ୍କୁ ଖାଇବା ପାଇଁ ନର୍ଦ୍ଦେଶ ଦଏ । 'ଭାତନାୟକ' ଖାଉଥିବା ଖଲପତ୍ର ତଳେ ସମ୍ପୃକ୍ତ ବାସନ୍ଦ ବ୍ୟକ୍ତି ପାଞ୍ଚ ଟଙ୍କା 'ଭାତନାୟକ'ଙ୍କୁ ଦକ୍ଷିଣା ସ୍ୱରୂପ ଦେଇଥାଏ । ଏହି ସମସ୍ତ ସାମାଜିକ ରୀତି ପାଳନର ସମାପ୍ତି ପରେ ବାସନ୍ଦ ବ୍ୟକ୍ତିକୁ ପୁନର୍ବାର ସମାଜରେ ସାମିଲ କରାଯାଏ ।

ପରଜା ସ୍ତ୍ରୀ ଲୋକମାନଙ୍କର ବସ୍ତ୍ର ଓ ଅଳଙ୍କାର ପରଧାନରେ ଏକ ପ୍ରକାର ସ୍ୱତନ୍ତ୍ରତା ପରଲକ୍ଷିତ ହୁଏ । ସେମାନେ ଦୁଇ କାନରେ ପିତଳ ନର୍ମିତ ବଳା (Brass earrings) ପିନ୍ଧନ୍ତି । ଗୋଟିଏ ଗୋଟିଏ କାନରେ ସେମାନେ ଏହିପର ଦଶ ବାରଟି ବଳା ପିନ୍ଧିଥାନ୍ତି । ନାକରେ ସେମାନେ ଅନୁରୂପ ତିନୋଟି ବଳା ପିନ୍ଧି ନାକ ଓ କାନରେ ଅଳଙ୍କାରରେ ସାମଞ୍ଜସ୍ୟ (similarily) ରଖିଥାନ୍ତି । ଯଦ କୌଣସି ପରଜା ସ୍ତ୍ରୀ ଲୋକ ଏପର ନ

ପିନ୍ଧନ୍ତି, ତାହାହେଲେ ତାକୁ ସମାଜରେ ସମସ୍ତେ ତାଚ୍ଛଲ୍ୟ କରିଥାନ୍ତି ଏବଂ ଶାଶୁ ଘରେ ସେଥିପାଇଁ ତାକୁ ନିର୍ଯ୍ୟାତିତା ହେବାକୁ ପଡ଼ିଥାଏ । ତେଣୁ ଧନୀ ଗରିବ ନିର୍ବିଶେଷରେ ପ୍ରତ୍ୟେକ ପରଜା ରମଣୀ ତା'ର ଏହି ଅଳଙ୍କାର ଧାରଣ ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରିଥାଏ । କେଶବିନ୍ୟାସରେ ପରଜା ରମଣୀ ବିଶେଷ ନୈପୁଣ୍ୟ ଦେଖାଇଥାଏ । କେଶକୁ ଗୁଡ଼ି କରି ସେ ଚକ ଜୁଡ଼ା (flat bun) ବାନ୍ଧେ । ଜୁଡ଼ାର ଉଭୟ ପାର୍ଶ୍ୱରେ ଆଠ ଦଶଟି ପିତ୍ତଳ ମୁଣ୍ଡ କଣ୍ଟା (hairpin) ପିନ୍ଧି ପରଜା ରମଣୀ ତା'ର ସୁରୁଚି ଓ ସୌଖିନତାର ପରିଚୟ ଦେଇଥାଏ । ଏହାଛଡ଼ା ସେମାନେ ହାତର ଦଶ ଆଙ୍ଗୁଠିରେ ଦଶଟି ପୁରୁଣା ରୂପାଟଙ୍କା ବା ରୂପା ଅଧୁଲିରେ ନିର୍ମିତ ମୁଦ୍ରିକା ପିନ୍ଧିବାର ଦେଖାଯାଏ । ସେମାନେ ବେକରେ ଦୁଇ ତିନି ସାରି ରଙ୍ଗିନ ମାଳ ଏବଂ ହାତରେ ପ୍ଲାଷ୍ଟିକ ଚୁଡ଼ି ପିନ୍ଧିବା ପସନ୍ଦ କରନ୍ତି । ପରଜା ରମଣୀର ବସ୍ତ୍ର ପରିଧାନରେ ଏକ ପ୍ରକାରର ଭିନ୍ନତା ପରିଲକ୍ଷିତ ହୁଏ । ଶାଢ଼ୀର ତିନି ଚତୁର୍ଥାଂଶ ଅଣ୍ଟାରୁ ଆଣ୍ଠୁ ପର୍ଯ୍ୟନ୍ତ ଏବଂ ଏକ ଚତୁର୍ଥାଂଶ ଛାତି ଓ ପିଠିରେ ଗୁଡ଼ାଇ ବାମ ସ୍କନ୍ଧର ଉପର ପାର୍ଶ୍ୱରେ ଗୋଟିଏ ଗଣ୍ଠି ଦ୍ୱାରା ବାନ୍ଧି ଦେଇଥାନ୍ତି । ପରଜା ରମଣୀମାନେ ସାଧାରଣତଃ ଅତ୍ୟନ୍ତ ନୃତ୍ୟପ୍ରିୟ ହୋଇଥିବାରୁ ଶାଢ଼ୀ ପରିଧାନରେ ଏହି ବିଶେଷତ୍ୱ ଅନୁମାନ କରାଯାଏ । ସେମାନଙ୍କ ମତରେ ଏହି ପରିଧାନ ପରିପାଟିରେ କୌଣସି ପରିବର୍ତ୍ତନ ହେଲେ ଏହା ସେମାନଙ୍କର ପାରମ୍ପରିକ ନୃତ୍ୟରେ ପ୍ରତିବନ୍ଧକ ସୃଷ୍ଟି କରେ । ଉପରୋକ୍ତ ମତେ କ୍ଷେତ ବାଡ଼ିରେ କାର୍ଯ୍ୟ କରିବା ପାଇଁ ଏହା ଅନୁକୂଳ ବୋଲି ସେମାନଙ୍କର ମତ । ଶିକ୍ଷା କ୍ଷେତ୍ରରେ ବହୁ ପଛରେ ପଡ଼ିଥିଲେହେଁ ନୃତ୍ୟଗୀତରେ ସେମାନେ ଅତ୍ୟନ୍ତ ପାରଦର୍ଶିତା ପ୍ରଦର୍ଶନ କରିଥାନ୍ତି । 'ଢେମସା ନାଚ', 'ଢୁଡୁଙ୍ଗା ନାଚ' ଓ 'ଲଗା ଗୀତ' ପ୍ରଭୃତିରେ ସେମାନଙ୍କ ମଧ୍ୟରେ କଳାନୈପୁଣ୍ୟର ସହଜାତ ପ୍ରବୃତ୍ତି (inbaru histrionic talant) ପ୍ରସ୍ଫୁଟିତ ହୋଇଥାଏ । ପରଜା ଯୁବତୀମାନେ 'ଢୁଡୁଙ୍ଗା' (ଏକତାରା)ରେ ସଙ୍ଗୀତ ଏବଂ ସ୍ୱୀୟ ରଚିତ କବିତା ପରିବେଷଣ କଲାମାତ୍ରେ ନୃତ୍ୟପ୍ରିୟ ଆବାଳ-ବୃଦ୍ଧ-ବନିତା ନାଚିବା ପାଇଁ ମେଳ ବାନ୍ଧି ପ୍ରସ୍ତୁତ ହୋଇଯାଆନ୍ତି । ଯାହାକି ସେମାନଙ୍କର ସ୍ୱତଃସ୍ଫୂର୍ତ୍ତ ଗୁଣର ପରିଚାୟକ । ଶ୍ରେଷ୍ଠ ବାଳିକା, ଯୁବତୀ ଓ ବୃଦ୍ଧାମାନେ ସେମାନଙ୍କ ବୟସ ଅନୁସାରେ ପରସ୍ପର ଅଲଗା ଅଲଗା ଭାବେ ମେଳ ବାନ୍ଧି ନାଚିବା

ପରିଲକ୍ଷିତ ହୁଏ । 'ଲଗା ଗୀତ' (ପ୍ରତିଯୋଗିତା ମୂଳକ ସଙ୍ଗୀତ) ବିଶେଷତଃ ବିବାହ ତଥା ପରବପର୍ବ ସମୟରେ ହୋଇଥିବା ଲକ୍ଷ୍ୟ କରାଯାଏ । ଆଦିବାସୀ ପରଜାମାନେ ଦିନସାରା ହାଡ଼ଭଙ୍ଗା ପରିଶ୍ରମ ପରେ ସନ୍ଧ୍ୟା ସମୟରେ ଏହିପରି ମନୋରଞ୍ଜନ କାର୍ଯ୍ୟକ୍ରମ ମାଧ୍ୟମରେ ନିଜର ଦୁଃଖ କଷ୍ଟ ଭୁଲି ଯାଆନ୍ତି । ପରଜାମାନେ 'ଲମ୍ବା' ନାମରେ ଏକପ୍ରକାର ମଦ୍ୟ ଜାତୀୟ ମାଦକ ଦ୍ରବ୍ୟ ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ପୂଜା ପର୍ବାଣିରେ ସେବନ କରନ୍ତି । ଏହି ଲମ୍ବା ମଦ ରନ୍ଧନ ପ୍ରଣାଳୀ ହେଲା ସେମାନେ ପ୍ରଥମେ ମାଣ୍ଡିଆ, ମକ୍କା, ସୁଆଁ, ଜହ୍ନା ପ୍ରଭୃତି ଶସ୍ୟକୁ ପାଣିରେ ବତୁରାଇ ଗଜାକରି ଦିଅନ୍ତି । ଉକ୍ତ ଗଜାଗୁଡ଼ିକୁ ଶୁଖାଯାଇ ଚୂନା କରାଯାଏ । ସେହିପରି ଗୁଡ଼ଲକୁ ମଧ୍ୟ ଚୂନା କରାଯାଏ । ଗୁଡ଼ଲ ଚୂନାକୁ ପାଣିରେ ମିଶାଇ ଛୋଟ ଛୋଟ ବଡ଼ି କରାଯାଇ ଫୁଟନ୍ତା ପାଣିର ବାମ୍ଫରେ ତାକୁ ସିଝାଇ ଦିଆଯାଏ । ପୂର୍ବରୁ ଚୂରାଯାଇ ରଖିଥିବା ଶସ୍ୟ ଗଜାର ଚୂନା ସହିତ ସିଝାଯାଇଥିବା ଗୁଡ଼ଲ ଚୂନାର ବଡ଼ିକୁ ଗୋଟିଏ ପୁରୁଣା ମାଟି ହାଣ୍ଡିରେ ଭର୍ତ୍ତିକରି ସେଥିରେ ପାଣି ମିଶାଇ ଦିଆଯାଏ । ଏହାକୁ ତିନି ଚାରିଦିନ ଏପରି ଭାବରେ ରଖିଲା ପରେ ଉପରୋକ୍ତ ଶସ୍ୟ ଗଜାର ଚୂନା-ଗୁଡ଼ିକ ପଚିଯାଇ ଉପରୋକ୍ତ ପ୍ରକାରର ମାଦକଦ୍ରବ୍ୟ ପ୍ରସ୍ତୁତ ହୁଏ । ଏହି 'ଲମ୍ବା' ମଦ ପରଜା ସମାଜର ଅନ୍ୟତମ ଉପଭୋଗ୍ୟ ବସ୍ତୁ ।

ଆଦିବାସୀ ପରଜା ସମାଜରେ ତିନି ପ୍ରକାରର ବିବାହ ପ୍ରଥା ପ୍ରଚଳିତ ଥିବାର ଦେଖାଯାଏ । ସେଗୁଡ଼ିକ ହେଲା 'ମଗା ବିବାହ', 'ଝିଙ୍କା ବିବାହ' ଏବଂ 'ପଷଣାମୁଣ୍ଡି ବିବାହ' । ସମାଜର ରୀତି ଅନୁଯାୟୀ ଯେଉଁଠାରେ ସମ୍ବନ୍ଧ ସ୍ଥାପନ (negotiation) ହୋଇ ବିବାହ ସ୍ଥିରୀକୃତ ହୁଏ, ତାହାକୁ 'ମଗା ବିବାହ' କୁହାଯାଏ । ଏହି ବିବାହରେ ବରପକ୍ଷରୁ ଦୁଇ ତିନିଜଣ ଭଦ୍ରବ୍ୟକ୍ତି ଗୋଟିଏ ବାଉଁଶ ଠେଙ୍ଗା ଓ ମଦ୍ୟ ଧରି କନ୍ୟାପିତା ଘରକୁ ଯାଆନ୍ତି । ସାଧାରଣତଃ ବରପକ୍ଷ ଦିଆଲି ମାସ ବା କାର୍ତ୍ତିକ ମାସରେ କନ୍ୟା ମାଗି ଯାଆନ୍ତି । କନ୍ୟାପିତା ଘରେ ପହଞ୍ଚି ତାଙ୍କ ଘର ମଝି କାନ୍ଥରେ ଠେଙ୍ଗାଟିକୁ ଡେରିଦେଇ ସେଥିରେ ମଦ ବୋତଲଗୁଡ଼ିକୁ ଟାଙ୍ଗି ଦିଅନ୍ତି । କନ୍ୟାପିତା ସେମାନଙ୍କର ଆଗମନର ଉଦ୍ଦେଶ୍ୟ ପରିଷ୍କାର ବୁଝିଲେ ସେମାନେ 'ମାଲବାରିଆ' ବା 'ଝିଇବାରିଆ' ଆସୁଛନ୍ତି ବୋଲି

ଉତ୍ତର ଦିଅନ୍ତି । କନ୍ୟା ଦେବାର ଇଚ୍ଛା ନ ଥିଲେ କନ୍ୟାପିତା ଠେଙ୍ଗାଟି ବାହାର କରିଦେଇ ମଦବୋତଲଗୁଡ଼ିକୁ ଫେରାଇ ନେବାକୁ 'ଭାଇବାରିଆ' ଓ 'ମାଳବାରିଆ'ଙ୍କୁ ନିର୍ଦ୍ଦେଶ ଦିଅନ୍ତି । ଅନ୍ୟ ପକ୍ଷରେ କନ୍ୟା ଦାନର ଉଦ୍ଦେଶ୍ୟ ଥିଲେ କନ୍ୟାପିତା କିମ୍ବା କନ୍ୟାର ଭାଇମାନେ ମଦ ବୋତଲ-ଗୁଡ଼ିକୁ ଠେଙ୍ଗାରୁ ଫିଟାଇ 'ମାଲବାରିଆ' ଓ 'ଭାଇବାରିଆ' ସମେତ ସମସ୍ତେ ବାଣ୍ଟି ଖାଆନ୍ତି ଏବଂ 'ଭାଇବାରିଆ' ହାତରେ ଠେଙ୍ଗାକୁ ଧରାଇ ଦେଇ ଆଉ ଦିନେ ଆସିବାକୁ କହନ୍ତି । ଏହି ଭାବରେ କନ୍ୟାପିତାଙ୍କର କନ୍ୟାଦେବା ପାଇଁ ଇଚ୍ଛା ପରୋକ୍ଷଭାବେ ଜଣାପଡ଼େ । 'ଦିଶାରି'ର ପରାମର୍ଶକ୍ରମେ କୌଣସି ଏକ ବୁଧବାର ଦିନ 'ମାଲବାରିଆ' ଓ 'ଭାଇବାରିଆ' ମାନେ ଗୋଟିଏ ବୋତଲ ମଦ, କିଛି ଚାଉଳ, ମାଣ୍ଡିଆ ଓ ଟଙ୍କା ନେଇ କନ୍ୟାପିତା ଘରକୁ ଯାଆନ୍ତି । କନ୍ୟାପିତା ଆଉ କିଛି ମଦ ନିଜ ତରଫରୁ ଆଣି 'ମାଲବାରିଆ' ଆଣିଥିବା ମଦରେ ମିଶାଇ ଗ୍ରାମର ମୁଖିଆ ଲୋକ-ମାନଙ୍କୁ ଡାକି ଖାଇବାକୁ ଦେଇ ନିଜର ଝିଅର ବିବାହ ସମ୍ବନ୍ଧ ଚୂଡ଼ାନ୍ତ କରିଥାଏ । ତା'ପରେ ବର ନିଜର ବନ୍ଧୁବାନ୍ଧବଙ୍କ ସହିତ କନ୍ୟା ଘରକୁ ଯାଏ । କୁଳକଣ୍ଟି ଅନୁଯାୟୀ ବରପିତା କନ୍ୟାପିତାଙ୍କୁ କନ୍ୟା ମୂଲ (ଜାଲା) ଦେବାକୁ ପଡ଼ିଥାଏ । କନ୍ୟା ଧରି ନିଜର ଘରକୁ ଫେରିଲାବେଳେ କନ୍ୟା ପିତାର ଗ୍ରାମସୀମା ପାରିହେବା ପୂର୍ବରୁ ଝିଅର ମାମୁଁଙ୍କୁ ଭେଟି ଉପହାର ସ୍ୱରୂପ ଗୋଟିଏ ଘୁଷୁରି ଓ କିଛି ମଦ ଦେବାକୁ ପଡ଼େ । ଝିଅର ଭାଇକୁ ମଧ୍ୟ 'ଶଳା ଖେଁଦିଆ' ସ୍ୱରୂପ କିଛି ପାଉଣା ଦେବାକୁ ପଡ଼ିଥାଏ । ନିଜ ଗ୍ରାମରେ ପହଞ୍ଚିବା ପରେ ବରପକ୍ଷରୁ ଏହି ବିବାହ ଆଡ଼ମ୍ବର ସହକାରେ ପାଳିତ ହୋଇଥାଏ । ସାଧାରଣତଃ ଏହି ବିବାହ କାର୍ଯ୍ୟ ମାଘ ମାସରେ ସମାପନ ହୋଇଥାଏ । ଏହାର କାରଣ ହେଉଛି ଏହି ସମୟରେ ସେମାନେ ବିଭିନ୍ନ ଶସ୍ୟ ଅମଳ କରିଥାଆନ୍ତି ଏବଂ ସେମାନଙ୍କର ଆର୍ଥିକ ସ୍ଥିତି ସାଧାରଣତଃ ସ୍ୱଚ୍ଛଳ ଥାଏ । ପରଜା ସମାଜରେ କେବଳ ସ୍ୱଚ୍ଛଳ ବ୍ୟକ୍ତି ଏହି ସମୟରେ 'କୁମୁଡ଼ାମାରି' ଉତ୍ସବ ପାଳନ କରିଥାନ୍ତି । ଏହି ଉତ୍ସବର ତାତ୍ପର୍ଯ୍ୟ ହେଲା ଦୁଇଟି ଲମ୍ବ ବାଉଁଶକୁ ଦୁଇପଟେ ପୋତି ଅନ୍ୟ ଏକ ଲମ୍ବ ବାଉଁଶଦ୍ୱାରା ସେହି ବାଉଁଶ ଦୁଇଟିକୁ ଯୋଡି ଦିଅନ୍ତି ଏବଂ ସେଥିରେ ଗୋଟିଏ 'କୁମୁଡ଼ା' (ପାଣିକଖାରୁ) ଝୁଲାଇ ରଖନ୍ତି । ପୋତାଯାଇଥିବା ବାଉଁଶଗୁଡ଼ିକରେ

ଜଡ଼ାତେଲ ଲଗାଯାଇ ସେଗୁଡ଼ିକୁ ଅତି ମସୃଣ କରି ଦିଆଯାଏ ଏବଂ ସବୁ ପ୍ରଥମେ କନ୍ୟାପକ୍ଷର ଲୋକଙ୍କୁ ଏହି ବାଉଁଶରେ ଚଢ଼ି ଟାଙ୍ଗି ସାହାଯ୍ୟରେ ଝୁଲୁଥିବା ପାଣିକଖାରୁଟିକୁ ଏକା ଚୋଟରେ କାଟିବାକୁ ସୁବିଧା ଦିଆଯାଏ । ଯଦି କନ୍ୟାପକ୍ଷର ଲୋକ ପାଣିକଖାରୁଟିକୁ ଗୋଟିଏ ଚୋଟରେ କାଟି ଦିଅନ୍ତି ତାହାହେଲେ ବରପକ୍ଷ କନ୍ୟାପକ୍ଷକୁ ହାଣ୍ଡିଏ 'ଲନ୍ଦା' ମଦ, ମାଂସ ପ୍ରଭୃତି ପଣ ଦେବାକୁ ହୋଇଥାଏ । ଯଦି କନ୍ୟାପକ୍ଷର ଲୋକ ଉକ୍ତ ପାଣିକଖାରୁଟିକୁ କାଟି ନ ପାରନ୍ତି ତାହାହେଲେ ବରପକ୍ଷକୁ ଉକ୍ତ ସୁଯୋଗ ଦିଆଯାଏ । ପରିଶେଷରେ ପରାଜିତ ପକ୍ଷର ଲୋକଙ୍କୁ ହାଣ୍ଡିଏ 'ଲନ୍ଦା' ଓ ମାଂସ ପ୍ରଭୃତି ଜିତାପଟ ଲୋକଙ୍କୁ ଦେବାକୁ ପଡ଼ିଥାଏ ।

ଉପରୋକ୍ତ ମତେ କନ୍ୟା ମାଗି ବିବାହ ପାଇଁ ସମ୍ଭବ ନ ଥିଲେ ଅଥବା ବର ଓ କନ୍ୟାର ଇଚ୍ଛା ଥିବା ସତ୍ତ୍ୱେ ବର ପିତା କିମ୍ବା କନ୍ୟା ପିତାର ଇଚ୍ଛା ନ ଥିଲେ, ସେହିପରି ସ୍ଥଳେ 'ଝିଙ୍କା' ବିବାହ ପରଜା ସମାଜରେ ଦେଖାଯାଏ । ବର ଓ କନ୍ୟା ମଧ୍ୟରେ ଯୋଗସୂତ୍ର ସ୍ଥାପନ କରିବା ପାଇଁ ଜଣେ ମଧ୍ୟସ୍ଥ ରହିଥାଏ । ଏହି ବ୍ୟକ୍ତିକୁ 'ସୂତ୍ରକାରୀ' କୁହାଯାଏ । ନିର୍ଦ୍ଧାରିତ ସ୍ଥଳେ ଓ ସମୟରେ କେତେକ ପରଜା ଯୁବକ ବର ସହିତ ଯାଇ କନ୍ୟାକୁ ଝିଙ୍କି ଆଣନ୍ତି । ସାଧାରଣତଃ ଏହି ଝିଙ୍କା ବିବାହ କୌଣସି ଯାତ୍ରା, ମେଳା କିମ୍ବା ସାପ୍ତାହିକ ହାଟ ସମୟରେ ଘଟିଥାଏ । ପ୍ରଥମେ ବର କନ୍ୟାର ହାତଧରି ଅଳ୍ପ ଟାଣି ଆଣିଲା ପରେ ବର ପକ୍ଷର ଯୁବକମାନେ ସେହି କନ୍ୟାକୁ ଟାଣି ଓଟାରି ଧରି ଆସନ୍ତି । କୌତୁହଳର ବିଷୟ ଏହି ଯେ ଯଦି କନ୍ୟା ବରପକ୍ଷର ଯୁବକମାନଙ୍କୁ ଏହି ସମୟରେ ମାଡ଼ମାରେ ତାହାହେଲେ ବରପ୍ରତି କନ୍ୟାର ଆସ୍ଥା ଓ ସମ୍ମତି ଥିବା ବୁଝାଯାଏ । କିଛୁଦିନ ପରେ କନ୍ୟାପକ୍ଷର ଲୋକେ ବରଘର ଗାଁକୁ ହରଣଗୃଳ ହୋଇଥିବା କନ୍ୟା ଖୋଜିବା ଉଦ୍ଦେଶ୍ୟରେ ଯାଆନ୍ତି । ସେମାନଙ୍କ ମଧ୍ୟରେ କେବଳ 'ଖଜବାଣା' (ଖୋଜିବା ଲୋକ) ଗୋଟିଏ ଲୁହା ପାତିଆ ଲଗିଥିବା ବାଉଁଶ ଠେଙ୍ଗାଟିଏ ଧରିଥାଏ ଏବଂ ଅନ୍ୟାନ୍ୟ ଲୋକେ 'ଖଜବାଣା' ସହ 'ଘଇବାରିଆ' ହୋଇଯାଆନ୍ତି । ସେମାନଙ୍କର କୌଣସି ଗୃହପାଳିତ ପଶୁ ହଜିଥିବା ବାହାନା କରି ସେମାନେ ବରର ଗ୍ରାମରେ ପ୍ରବେଶ କରନ୍ତି । କହିବା ବାହୁଲ୍ୟ ଯେ କେଉଁ ଗ୍ରାମର ଯୁବକ

ସଂପୃକ୍ତ କନ୍ୟାଟିକୁ ହରଣଚୋରି କରି ନେଇଛନ୍ତି ତାର ଖବର ପୂର୍ବରୁ ସୁନିଶ୍ଚିତ ହୋଇସାରିଥାଏ। ସେମାନଙ୍କର ଗୃହପାଳିତ ପଶୁକୁ କିଏ ଗୁହାଳ (Cow shed)ରେ ବାନ୍ଧିଛନ୍ତି ବୋଲି କନ୍ୟାପକ୍ଷର ଲୋକେ ବରପକ୍ଷର ମୁଖିଆ ଲୋକଙ୍କୁ ପଚାରନ୍ତି। ଗ୍ରାମର ମୁଖିଆ 'ମୁଦୁଲି' ଏହାର ଉତ୍ତରରେ କହନ୍ତି ଯେ ସେମାନଙ୍କ ଗୃହପାଳିତ ପଶୁଟିକୁ ଗ୍ରାମର କୌଣସି ଏକ ଗୁହାଳରେ ଦାନାପାଣି ଦିଆଯାଇ ବାନ୍ଧି ରଖାଯାଇଅଛି ଏବଂ ତାକୁ ଆଉ ଫେରାଇ ଦେବାର ପ୍ରଶ୍ନ ନାହିଁ। ଚାହିଁଲେ ସଂପୃକ୍ତ ବ୍ୟକ୍ତି ତାର ମୂଲ୍ୟ ଦେଇଦେବେ ବୋଲି ସେ କହନ୍ତି। ବରପକ୍ଷରୁ ଗାଁ ମୁଖିଆ କନ୍ୟାପକ୍ଷର ଲୋକଙ୍କୁ କନ୍ୟାମୂଲ୍ୟ (ଜୋଲା) ନେବାପାଇଁ ଆସିବାକୁ ନିର୍ଦ୍ଦେଶ ଦେଲା ପରେ 'ଖଜବାଣା' ଫେରିଯାଆନ୍ତି। ତା'ପରେ 'ଚଲାଣ' ଦ୍ୱାରା କନ୍ୟାପକ୍ଷ ଲୋକେ କୌଣସି ଏକ ନିର୍ଦ୍ଦିଷ୍ଟ ଦିନରେ ଆସିବୁ ବୋଲି କହି ବରପକ୍ଷକୁ ଖବର ଦିଅନ୍ତି। ଉକ୍ତଦିନ ବରପିତା ମଦ ଓ ଭୋଜିଭାତ ସହିତ କନ୍ୟାପକ୍ଷକୁ ଅପେକ୍ଷା କରେ। କନ୍ୟାପକ୍ଷର ଲୋକଙ୍କ ସହ ପୂର୍ବରୁ ଆସି ଫେରିଯାଇଥିବା 'ଖଜବାଣା' ମଧ୍ୟ ଆସିଥାଏ ଏବଂ ତାର ହାତରେ ପୂର୍ବବର୍ଣ୍ଣିତ ଲୁହାପାଞ୍ଜିଆ ଲାଗିଥିବା ବାଉଁଶ ଠେଙ୍ଗାଟି ମଧ୍ୟ ଥାଏ। ବରଘର ତରଫରୁ ସଧବା ସ୍ତ୍ରୀ ଲୋକମାନେ 'ଖଜବାଣା'ର ଦୁଇ ପାଦରେ, ଆଣ୍ଠୁରେ, କାନ୍ଧରେ ଓ କପାଳରେ ହଳଦି ମିଶ୍ରିତ ଚାଉଳ ଲଗାଇଦେଇ ନମସ୍କାରପୂର୍ବକ ସମ୍ବର୍ଦ୍ଧନା ଜଣାନ୍ତି। ଏହାପରେ ସମସ୍ତେ କୌଣସି ଏକ ଗାଈ ଗୁହାଳରେ ବସି କଥାବାର୍ତ୍ତା ଆରମ୍ଭ କରନ୍ତି। ଉଭୟ ପକ୍ଷର ଭିତରେ ଯୁକ୍ତିତର୍କ ବାଦାନୁବାଦ ଓ ବାକ୍ୟ ବିନିମୟ ହୁଏ। ଶେଷରେ କନ୍ୟାପକ୍ଷ, ବରପକ୍ଷଠାରୁ 'ଜୋଲା' (bride price) ନେଇ ଭୋଜିଭାତ ଖାଇ ଫେରନ୍ତି। ନିର୍ଦ୍ଦିଷ୍ଟ ତିଥିରେ 'ଦିଶାରୀ'ର ପରାମର୍ଶକ୍ରମେ ଅବିବାହିତ ପରଜା ଯୁବକ ଯୁବତୀମାନେ ବର ଓ କନ୍ୟାର ଦେହରେ ହଳଦି ମାଖି ବିବାହ କାର୍ଯ୍ୟ ସମାପନ କରନ୍ତି।

ପରଜା ସମାଜରେ ଯେଉଁ ତୃତୀୟ ପ୍ରକାର ବିବାହ ପ୍ରଚଳିତ ତାହାକୁ 'ପକ୍ଷଣ ମୁଣ୍ଡି' ବୋଲି କହନ୍ତି। ଏହି ପ୍ରଥା ଅନୁଯାୟୀ ପରଜା ଯୁବକ ଓ ଯୁବତୀମାନଙ୍କ ମଧ୍ୟରେ ପାରମ୍ପରିକ ରୀତିରେ ପ୍ରାୟ ଦୁଇ ତିନି ମାସ ପର୍ଯ୍ୟନ୍ତ ପ୍ରତିଯୋଗିତାମୂଳକ ଗୀତ ବିନିମୟ ଚାଲେ। ଏହି ସଙ୍ଗୀତ

ପ୍ରତିଯୋଗିତା ମାଧ୍ୟମରେ ଯୁବକ ଓ ଯୁବତୀମାନେ ନିଜ ନିଜ ଭିତରେ ଇଚ୍ଛାମତେ ଜୀବନସାଥୀ ବାଛି ବିବାହ କରିବାକୁ ସୁଯୋଗ ପାଇଥାନ୍ତି । ପରଜା ଯୁବତୀର କୌଣସି ପରଜା ଯୁବକ ପ୍ରତି ଅନୁରାଗ ଜାତ ହେଲେ ବା ଅନ୍ୟ ଭାଷାରେ ପ୍ରେମ ଉଦ୍ରେକ ହେଲେ ସେହି ଯୁବତୀ ହଠାତ୍ ପରଜା ଯୁବକର ଘରେ ପହଞ୍ଚିଯାଏ ଏବଂ ସେହି ଯୁବକର ମା'କୁ ପେଜ ବା ମାଣ୍ଡିଆ ଯାଉ ମାଗେ । ଏହା ଦେଖି ଯୁବକର ମା' ଗୋଟିଏ ପତ୍ରଦନାରେ (leaf cup) ମାଣ୍ଡିଆ ଯାଉ ବା ପେଜ ଉକ୍ତ ଯୁବତୀକୁ ଖାଇବାକୁ ଦିଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଯୁବକର ମା' ଯୁବତୀଟିର ଆଗମନର ଉଦ୍ଦେଶ୍ୟ ବେଶ୍ ବୁଝିପାରେ ଏବଂ ତାକୁ ସାଧାରଣତଃ ସ୍ୱାଗତ କରିଥାଏ । ଯୁବତୀଟି ପେଜ ବା ଯାଉ ଖାଇସାରି ଯଦି ପତ୍ରଦନାଟିକୁ ପାଣିହାଣ୍ଡି ତଳେ ରଖିଦିଏ ତାହାହେଲେ ସେ ତାର ପୁତ୍ରବଧୂ ହେବାକୁ ଯାଉଛି ବୋଲି ଯୁବକର ମା ବୁଝିନିଏ ଏବଂ ପାଣି ଆଣିବାପାଇଁ ଗୋଟିଏ ପାଣି ମାଠିଆ ଯୁବତୀର ହାତରେ ଧରାଇ ଦିଏ । ଯୁବତୀ ମାଠିଆରେ ପାଣି ଆଣି ଗରମ କରେ ଏବଂ ତାର ଭାବୀ ସ୍ୱାମୀ ଘରେ ପହଞ୍ଚିବା ମାତ୍ରେ ତା' ଦେହରେ ହଳଦି ବୋଳି ଉକ୍ତ ପାଣି ଗାଧୋଇବାକୁ ଦିଏ । ଏହା ପରେ ବରପିତା କନ୍ୟା ପିତାକୁ ଉକ୍ତ ସମ୍ବାଦ ଦେଇଥାଏ । କନ୍ୟାପିତା ଝିଅର ଏତାଦୃଶ ସ୍ୱେଚ୍ଛାଚାରିତା ପାଇଁ କ୍ଷୋଭ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଲଜ୍ଜା ଅନୁଭବ କରେ ଏବଂ ସେ ବରପିତା ଘରକୁ ନିଜେ ନ ଆସି ନିଜର ବନ୍ଧୁବାନ୍ଧବମାନଙ୍କ ଜରିଆରେ 'ଜଲ୍ଲା' (bride price) ଗ୍ରହଣ କରେ । ଜଲ୍ଲା ଶିଡ଼ିବା ଦିନ ବର ନିଜେ ଦ୍ୱାରା ଭୋଜିଭାତ ମଦ ଓ ମାଂସ ପରିବେଷଣ କରାଯାଇ 'ଦିଶାରୀ'ର ପରାମର୍ଶକ୍ରମେ ବିବାହ କାର୍ଯ୍ୟ ସମାପନ କରାଯାଇଥାଏ । ଏହାକୁ ପରଜାମାନେ 'ଉଦୁଲିଆ' ଏବଂ 'ପଇସା ମୁଣ୍ଡି' ବିବାହ ମଧ୍ୟ କହିଥାନ୍ତି ।

ପରଜା ସମାଜରେ ବିଶେଷ କରି ଜଣେ ବୟସ୍କା ସ୍ତ୍ରୀ ଲୋକର ପ୍ରସବ ସମୟର ବେଦନା ଆରମ୍ଭ ହେଲେ ପରଜାମାନେ ଉକ୍ତ ଧାଈଙ୍କ ସମେତ 'ଗୁରୁମାଇଁ'କୁ ମଧ୍ୟ ଡାକି ଆଣନ୍ତି । 'ଗୁରୁମାଇଁ' ସେଠାରେ ଧୂପଦୀପ ଜାଳି ନିଜେ ଜାଣିଥିବା କେତେକ ଉପାୟ ଅବଲମ୍ବନ କରିଥାଏ । ଏହା ସତ୍ତ୍ୱେ ପରଜା ସ୍ତ୍ରୀଲୋକର କୌଣସି ପ୍ରତିକାର ନ ହେଲେ କିମ୍ବା ପ୍ରସବ ସମୟରେ ଭୀଷଣ କଷ୍ଟ ଅନୁଭବ କଲେ ପରଜାମାନେ ଗୁଣିଆଦ୍ୱାରା ଚେରମୂଳି ପ୍ରସ୍ତୁତ

ଔଷଧ ପ୍ରୟୋଗ କରିଥାଆନ୍ତି । ଛୁଆ ଜନ୍ମ ହେଲା ପରେ ଘର ଅଗଣାରେ ଗୋଟିଏ ଗାତ ଖୋଳି ନବଜାତ ଶିଶୁର ନାଭି କାଟିଲା ପରେ ଉକ୍ତ ଗାତ ନିକଟରେ ରଖାଯାଇ ଦିଅନ୍ତି । ଶିଶୁର ନାଭି ସମ୍ପୂର୍ଣ୍ଣଭାବେ ଶୁଖି ନ ଝଡ଼ିଲା ପର୍ଯ୍ୟନ୍ତ ମା' ଓ ଶିଶୁକୁ ପରଜାମାନେ ଅଛୁଆଁ ରଖନ୍ତି । ଯେଉଁଦିନ ଶିଶୁର ନାଭି ସଂପୂର୍ଣ୍ଣରୂପେ ଝଡ଼ିପଡ଼େ, ସେହିଦିନ ପରଜାମାନେ ପୂର୍ବୋକ୍ତ ଧାଈକୁ ଡାକି ଆଣି ଶୁଖି ଝଡ଼ିଥିବା ନାଭି ଅଂଶଟିକୁ ଖୋଳାଯାଇଥିବା ଗାତରେ ପକାଇ ଧୂପ, ଦୀପ ଓ କୁକୁଡ଼ା ବଳି ଦେଇ ଗାଡ଼ଟିକୁ ପୋତି ଦିଅନ୍ତି । ଧାଈକୁ କିଛି ଚାଉଳ, ମାଣ୍ଡିଆ, ହଳଦି ଓ ତେଲ ଦେଇ ପରଜାମାନେ ପୋଖତ ଶୌଚ ହୁଅନ୍ତି ।

ପରଜା ସମାଜରେ କେହି ମୃତ୍ୟୁବରଣ କଲେ, ମୃତ ବ୍ୟକ୍ତିର ନିଜ କୁଟୁମ୍ବର ଦୁଇ ଜଣ ଲୋକ ଶବକୁ ଶ୍ମଶାନକୁ ଉଠାଇ ନିଅନ୍ତି । ଏହି ଦୁଇ ଜଣ ବ୍ୟକ୍ତିକୁ ପରଜାମାନେ 'ମଡ଼ାଧରିଆ' କହନ୍ତି । ଶବ ସହିତ ପରଜାମାନେ ଶ୍ମଶାନକୁ ଗୋଟିଏ ପେଜ ହାଣ୍ଡି ମଧ୍ୟ ନିଅନ୍ତି । ଏହାକୁ ସେମାନେ 'ପେଣ୍ଡେଚଟା' କହନ୍ତି । ଶବ ଦାହ କଲାପରେ ପରଜାମାନେ ଏହି ପେଜ ହାଣ୍ଡିକୁ ଶ୍ମଶାନ ନିକଟରେ ପଥରଦ୍ୱାରା ଚଟାଇ ଦିଅନ୍ତି (ଫଟାଇ ଦିଅନ୍ତି) । ମୃତବ୍ୟକ୍ତି ମୃତ୍ୟୁ ସମୟରେ ବ୍ୟବହାର କରିଥିବା ଯାବତୀୟ ଜିନିଷଗୁଡ଼ିକୁ ଉଠାଇ ନେଇ ଶ୍ମଶାନ ନିକଟରେ ପରଜାମାନେ ଫୋପାଡ଼ି ଦିଅନ୍ତି । ମୃତ ବ୍ୟକ୍ତିର ବନ୍ଧୁବାନ୍ଧବମାନେ ଶ୍ମଶାନ ନିକଟରେ ଗୋଟିଏ ଲେଖାଏଁ ଟଙ୍କା ନିଜ ନିଜ ଭିତରେ ଆଦାୟ କରି ମଦ କିଣି ଆଣନ୍ତି ଏବଂ ଶବ ଦାହ ପରେ ସମସ୍ତେ ସ୍ନାନ ସାରି ମଦ ଖାଇ ଘରକୁ ଫେରନ୍ତି । ଗ୍ରାମର ପରଜାମାନେ ମୃତ ବ୍ୟକ୍ତିର କୁଟୁମ୍ବ ପ୍ରତି ସମବେଦନା ଜ୍ଞାପନ ସ୍ୱରୂପ ତିନି ଓଳି ପର୍ଯ୍ୟନ୍ତ ନିଜ ନିଜ ଘରୁ ପେଜ ପାଣି ନେଇ ଉକ୍ତ କୁଟୁମ୍ବର ଦୁଃଖ ମୋଚନ କରିବା ଉଦ୍ଦେଶ୍ୟରେ ସମସ୍ତେ ମିଳିମିଶି ଖାଇ-ଥାଆନ୍ତି । ଦ୍ୱିତୀୟ ଦିନ ମୃତ ବ୍ୟକ୍ତିର ଘରକୁ ସେମାନେ ଲିପାପୋଛା କରି ଦେଇ ତା'ର କୁଟୁମ୍ବର ଲୋକମାନଙ୍କର ଲୁଗାପଟା ସଫା କରି ଦିଅନ୍ତି । 'ମଡ଼ା ଧରିଆ'ମାନେ ଶ୍ମଶାନକୁ ଯାଇ ଶବ ସତ୍କାର ହୋଇଥିବା ସ୍ଥାନର ପାଉଁଶଗୁଡ଼ିକୁ ଏକାଠି ଜମାକରି, ସେଥିରେ ତିନୋଟି ପଥର ରଖି, ତହିଁ ଉପରେ ଅନ୍ୟ ଏକ ବଡ଼ ପଥର ଲଦି ଦିଅନ୍ତି । 'ମଡ଼ା

ଧରିଆ'ମାନେ ତା'ପରେ ନଘ କମ୍ଭାଁ ଝରଣାରେ କଚ୍ଛ ମାଛ ଧରି ଲୁଗା ସଫା କରାଯାଉଥିବା ଘାଟକୁ ଯାଆନ୍ତି । ଉକ୍ତ ଘାଟରେ ସେମାନେ 'କଙ୍କଡ଼ା ପତର' ନାମକ ଏକ ବୃକ୍ଷର ପତ୍ରକୁ ପିନ୍ଧି ନିଜର ଚୁଟି ସଫା କରିବା ପାଇଁ ଦେଇ ଦିଅନ୍ତି । ତା'ପରେ ସେମାନେ ସଫା ଲୁଗା ପିନ୍ଧି 'କଙ୍କଡ଼ା ପତର'କୁ ପାଣିରେ ଫୋପାଡ଼ି ମାଛଗୁଡ଼ିକୁ ଧରି ମୃତ ବ୍ୟକ୍ତିର ଘରକୁ ଫେରନ୍ତି । ସେଠାରେ ସେମାନେ ସାତ ମୁଠା ଚାଉଳରେ ଭାତ ରାନ୍ଧି ମାଛ ତରକାରି କରନ୍ତି ଓ ତାକୁ ସାତ ଭାଗରେ ବିଭକ୍ତ କରି, ଶାଳ ପତ୍ରରେ ସାତ ଗୋଟି ପୁଡ଼ିଆ (packet) କରନ୍ତି ଏବଂ ସେଥିରୁ ମୃତ ବ୍ୟକ୍ତିର କୁଟୁମ୍ବ, ଲୋକମାନଙ୍କୁ 'ପିତାଖିଆ' ବା 'ପିତା ଛୁଆଁ' ବୋଲି ଖାଇବାକୁ ଦିଅନ୍ତି । ମୃତ ବ୍ୟକ୍ତି ଘରେ ରନ୍ଧନ ସାମଗ୍ରୀ ଯଥା : ଭାତହାଣ୍ଡି, ଚଟୁ, ଛୁଚକି, କାଠ, ଚୂଲିର ପାଉଁଶ ପ୍ରଭୃତି ବାହାର କରି ଶ୍ମଶାନ ନିକଟରେ ଫୋପାଡ଼ି ଦିଅନ୍ତି । ସନ୍ଧ୍ୟା ସମୟରେ ମୃତ ବ୍ୟକ୍ତି ଯେଉଁ ସ୍ଥାନରେ ପ୍ରାଣ ତ୍ୟାଗ କରିଥିଲି, ସେଠାରେ ଗୋଟିଏ କୁକୁଡ଼ାକୁ ବଳି ଦିଆଯାଇ 'ମଡ଼ା ଧରିଆ' ମାନଙ୍କ କାନ୍ଧରେ ଦୁବ ଚାଉଳ ରଖି ସେମାନଙ୍କୁ କଞ୍ଚା ଚାଉଳ, ମାଣ୍ଡିଆ, ଟଙ୍କା ଓ ତେଲ ହଳଦି ପ୍ରଭୃତି ଦିଆଯାଏ । ଏହା 'ମଡ଼ା ଧରିଆ' ମାନେ ଉକ୍ତ ତେଲ ହଳଦିକୁ ଦେହରେ ଲଗାଇ ଶୌଚ ହୁଅନ୍ତି । ରାତି ସମୟରେ ଦୁଇଜଣ ଲୋକ ଗୋଟିଏ ବାଉଁଶ ଠେଙ୍ଗାରେ ଭାତ ଚୁଙ୍ଗୁଡ଼ିକୁ ଝୁଲାଇ ଶ୍ମଶାନ ନିକଟକୁ ଯାଆନ୍ତି ଏବଂ ପିତା ଭାତ ଖାଇବାକୁ ଆସ ବୋଲି ମୃତ ବ୍ୟକ୍ତିର ନାମ ଧରି ଜୋରରେ ଡାକ ଦିଅନ୍ତି । ଇତି ମଧ୍ୟରେ ମୃତ ବ୍ୟକ୍ତିର ଘରେ ଗୋଟିଏ ଖଳିପତ୍ର ଉପରେ ମାଣ୍ଡିଆଚୂନା ବିଛାଇ ଦେଇ, ତା' ଉପରେ ତାଙ୍କୁଣି କମ୍ବା ଟୋକେଇରେ ଘୋଡ଼ାଇ ଦିଆଯାଇଥାଏ । ସେହି ସ୍ଥାନକୁ ସଂପୂର୍ଣ୍ଣ ଶୂନ୍ୟତା (vacuum) କରାଯାଇ, କାହାକୁ ସେଠାକୁ ଛାଡ଼ି ଦିଆଯାଏ ନାହିଁ । ମୃତ ବ୍ୟକ୍ତିର କୁଟୁମ୍ବର ଲୋକମାନେ ଅନ୍ୟ ସ୍ଥାନରେ ଜଗି ରହିଥାଆନ୍ତି । ଯେଉଁ ଲୋକମାନେ ଶ୍ମଶାନକୁ ଯାଇଥିଲେ, ସେମାନେ କଞ୍ଚା ଭଗବତ୍ ନାମ ଉଚ୍ଚାରଣ ପୂର୍ବକ ମୃତ ବ୍ୟକ୍ତିର ଘର ସାମନାରେ ଆସି ପହଞ୍ଚନ୍ତି । ଘର ଭିତରୁ କେହି ଲୋକ ସେମାନଙ୍କର ଆଗମନର କାରଣ ବୁଝନ୍ତି । ଶ୍ମଶାନରୁ ଫେରିଥିବା ଲୋକମାନେ 'ଦୁଃଖ ଛାଡି ସୁଖ ଆଣିଛୁ' ବୋଲି ଉତ୍ତର

ଦିଅନ୍ତି । ତା’ପରେ ଉକ୍ତ ବ୍ୟକ୍ତିମାନେ, ଘର ଭିତରେ ପ୍ରବେଶ କରି ଧୂପ ଜାଳନ୍ତି ଏବଂ ପୂର୍ବୋକ୍ତ ଡାଙ୍କୁଣିରେ ମୁଦି ଦିଆଯାଇଥିବା ଚୂନାକୁ ପରୀକ୍ଷା କରିଷ୍ଟିକରି ଦେଖନ୍ତି । ଯଦି ସେହି ଚୂନା ଉପରେ ମଣିଷର ପାଦଚିହ୍ନ ପଡ଼ିଥିବା ଲକ୍ଷ୍ୟ କରାଯାଏ, ତାହାହେଲେ ମୃତ ବ୍ୟକ୍ତିକୁ କୌଣସି ଗୁଣିଆ କିମ୍ବା ପାଙ୍ଗଣା ଲୋକ ଖାଇଥିବା କଥା ପରଜାମାନେ ସନ୍ଦେହ କରନ୍ତି । ଯଦି ପଶୁ କିମ୍ବା ପକ୍ଷୀର ପାଦଚିହ୍ନ ସେହି ଚୂନା ଉପରେ ଦେଖାଯାଏ, ତାହାହେଲେ ମୃତ ବ୍ୟକ୍ତିକୁ ଦେବତା ଖାଇଥିବା କଥା ବୁଝାଯାଏ ଏବଂ କୌଣସି ଚିହ୍ନ ନ ଥିଲେ, ମୃତ ବ୍ୟକ୍ତିକୁ ଯମ ନେଇଛନ୍ତି ବୋଲି ସେମାନେ ଧରି ନିଅନ୍ତି ।

ସମ୍ବଳବିହୀନ ଆଦିବାସୀ ପରଜା ତୃତୀୟ ଦିବସରେ ଗ୍ରାମରେ ଛୋଟ-କାଠିଆ ଭୋଜଟିଏ କରି ନିରାଡ଼ମ୍ବର ସହକାରେ ଦଶାହକାର୍ଯ୍ୟ ସମ୍ପନ୍ନ କରିଥାଏ । ଉଲ୍ଲେଖଯୋଗ୍ୟ ଯେ ଏହି ସମ୍ବଳହୀନ ବ୍ୟକ୍ତିଟି ଯେଉଁ ଛୋଟ୍-କାଳିଆ ଭୋଜିର ବ୍ୟବସ୍ଥା କରେ ତାହାକୁ ଗ୍ରାମର ଆବାଳ-ବୃଦ୍ଧ-ବନିତା ପ୍ରସାଦଭଳି ବାଣ୍ଟି ଖାଇବାର ବିଧି ରହିଛି । କିନ୍ତୁ ସମ୍ବଳଥିବା ବ୍ୟକ୍ତି ଏହି କାର୍ଯ୍ୟଟିକୁ ସୁବିଧା ଦେଖି ସାଧାରଣତଃ ପୌଷ କିମ୍ବା ମାଘ ମାସରେ ଅତି ଆଡ଼ମ୍ବର ସହକାରେ ସଂପୂର୍ଣ୍ଣ କରିଥାଏ । ଯେହେତୁ ପରଜା ସମାଜରେ ଗ୍ରାମର ଆବାଳ-ବୃଦ୍ଧ-ବନିତା ସମସ୍ତେ ଦଶାହ ଭୋଜି ଖାଇବାକୁ ବାଧ୍ୟ, ତେଣୁ ସଂପୃକ୍ତ ବ୍ୟକ୍ତିଙ୍କୁ ଗ୍ରାମବାସୀଙ୍କ ଆବଶ୍ୟକତା ଅନୁଯାୟୀ ଚାଉଳ, ଭିନ୍ନାମଦ ଏବଂ ଛେଳି ଯୋଗାଡ଼ କରିବାକୁ ପଡିଥାଏ ।

ଆଦିବାସୀ ପରଜାମାନେ ପ୍ରେତଆତ୍ମାକୁ ‘ଡୁମା’ ବୋଲି କହନ୍ତି । ବାଘ କାମୁଡ଼ାରେ କେହି ମରିଥିଲେ ତାହାର ପ୍ରେତଆତ୍ମାକୁ ‘ବାଘଡୁମା’ ବୋଲି କହନ୍ତି । କୌଣସି ସ୍ଥାନରେ ଯଦି କେହି ଗଛରୁ ପଡ଼ି, ପାଣିରେ ବୁଡ଼ି, ପାହାଡ଼ ଖୋଲରେ ପଡ଼ି କିମ୍ବା ହିଂସ୍ରଜନ୍ତୁଦ୍ୱାରା ଆଘାତ ହୋଇ ମରିଥିଲେ, ସେହି ସ୍ଥଳଗୁଡ଼ିକୁ ଡୁମାର ବାସସ୍ଥଳୀ ବୋଲି କହନ୍ତି । ପରଜାମାନେ ନିର୍ଜନତା ଭିତରେ କେହି ସେଠାକୁ ଯାଆନ୍ତି ନାହିଁ । କୌଣସି କାରଣବଶତଃ କେହି ଚମକ ଜ୍ୱରରେ ପଡ଼ିଲେ ବା ବେମାର ହେଲେ ଗୁଣିଆ ଓ ‘ଗୁରୁମାଇଁ’ଙ୍କ ପରାମର୍ଶକ୍ରମେ ପୂଜାପାଠଦ୍ୱାରା କୁକୁଡ଼ା

ଘୃଷୁର ପ୍ରଭୃତି ବଳି ଦିଅନ୍ତି । ପରଜାମାନେ ପ୍ରତ୍ୟେକ ପର୍ବପର୍ବାଣୀ ପୂର୍ବରୁ ସେମାନଙ୍କ ଆତ୍ମୀୟ ସ୍ୱଜନଙ୍କ ପ୍ରେତାତ୍ମା ବା 'ଡୁମା'ମାନଙ୍କୁ ପ୍ରଥମେ ପୂଜା କରିଥାଆନ୍ତି ।

ଆଦିବାସୀ ପରଜାମାନେ ବିଭିନ୍ନ ମାସରେ ବିଭିନ୍ନ ପ୍ରକାର ପର୍ବ-ପର୍ବାଣୀ ପାଳନ କରିଥାଆନ୍ତି । ଏହା ବ୍ୟତୀତ ସେମାନେ 'ରଜ ସୁଷ୍ଟା ପୂଜା' ନାମକ ଏକ ପର୍ବ ପାଳନ କରିଥାଆନ୍ତି । ଲାଂଜିଆ ତାରା, ଧୂମକେତୁ ବା ଉଲକା ତାରା ଦୃଶ୍ୟ ହେଲେ ଦେଶରେ ମହଙ୍ଗା ତଥା ବିପତ୍ତି ଆସିବ ଏବଂ ଲୋକମାନେ ରୋଗଗ୍ରସ୍ତ ହେବେ ବୋଲି ପରଜାମାନେ ବିଶ୍ୱାସ କରନ୍ତି ଏବଂ ଗୁରୁମାଇଁମାନଙ୍କୁ ସାଙ୍ଗରେ ଧରି ଗାଁ ଗାଁ ଦଳ ଦଳ ହୋଇ ଭିକ୍ଷାମାଗି ବୁଲନ୍ତି । ଉକ୍ତ ତାରାଗୁଡ଼ିକ ଅଦୃଶ୍ୟ ହେଲା ପର୍ଯ୍ୟନ୍ତ ପରଜାମାନେ ଏହିପରି ଭିକ୍ଷାମାଗି ବୁଲନ୍ତି । ପରିଶେଷରେ ଦିସାରିର ପରାମର୍ଶକ୍ରମେ ଏକ ଶୁଭ ଲଗ୍ନରେ ପରଜାମାନେ ନଦୀ ବା ଝରଣା ନିକଟରେ ଉକ୍ତ ଗୁଉଳ ଏବଂ ମିଳିଥିବା ପଇସାରୁ କୁକୁଡ଼ା ଇତ୍ୟାଦି କିଣି ପୂଜାପାଠ ସହକାରେ ଭୋଜି-ଭାତ ଖାଇ ଘରକୁ ଫେରନ୍ତି । ଏହାଛଡ଼ା ସେମାନେ ବର୍ଷା ନ ହେଲେ କିମ୍ବା ଫସଲରେ ପୋକ ଲାଗିଲେ ନିଜ ନିଜ ଭିତରେ ପଇସା ଆଦାୟ କରି ଇନ୍ଦ୍ର ଦେବତାଙ୍କ ନାମରେ ପୋଡ଼ ଏବଂ ଘୁଷୁରି ଇତ୍ୟାଦି ପୂଜା ଦିଅନ୍ତି । ଏହାକୁ ସେମାନେ 'ଇନ୍ଦ୍ର ପୂଜା' ବୋଲି ମଧ୍ୟ କହନ୍ତି । ସୂର୍ଯ୍ୟ ପରାଗ କିମ୍ବା ଚନ୍ଦ୍ର ଗ୍ରହଣ ସମୟରେ ସେମାନେ 'ଗୁରୁ ଗୁଣିଆ' ଡାକି ଆଣି ଋଷ୍ଟ ଖଣ୍ଡନ କରିବାପାଇଁ କୁକୁଡ଼ା, ଛେଳି ଆଦି 'ରାହୁ କେତୁ ପୂଜା ବୋଲି ବଳୀ ଦିଅନ୍ତି ଏବଂ ଏହି ସମୟରେ ନାନା ପ୍ରକାର ଚେରମୂଳି ଔଷଧ ସଂଗ୍ରହ କରିଥାଆନ୍ତି ।

ଏହାଛଡ଼ା ସେମାନେ ହିନ୍ଦୁ ସମାଜରେ ପ୍ରଚଳିତ ମାର୍ଗଶୀର ମାସର ଝାଙ୍କର ପୂଜା ତଥା 'ଅଣକା କୋରା' ବା 'ଡବଣି' ପୂଜା ମଧ୍ୟ କରିଥାଆନ୍ତି । ଏହି ପର୍ବରେ ସେମାନେ ନୂଆ ଲାଉ ତୁମ୍ବାକୁ ବ୍ୟବହାର କରି ପୁରୁଣାତକ ଫୋପାଡ଼ି ଦିଅନ୍ତି ।

ଆଦିବାସୀ ପରଜାମାନେ ଆଷାଢ଼ ମାସରେ ଲକ୍ଷ୍ମୀପୂଜା ବା 'ଠାକୁ ପର୍ବ' ପାଳନ କରିଥାନ୍ତି । ଶ୍ରୀଗୁଣ୍ଡିଚ୍ଚାର ଠିକ୍ ପୂର୍ବଦିନ ଗ୍ରାମର ଜାନୀ

